# ବିଶ୍ୱାମିତ୍ର



STOKE PRESS.

ଷ୍ଟୁଡେଣ୍ଟସ୍ ଷ୍ଟୋର, ବ୍ରହ୍ମପୁର

ବାଲବିନୋଦ ଗ୍ରନ୍ଥମାଳା ୯

# ବିଶ୍ୱାମିତ୍ର

ଶ୍ରୀ ବାସୁଦେବ ମହାପାତ୍ର ପ୍ରଣୀତ

# BISVAMITRA

BY

**BASUDEV MAHAPATRO.**

ପ୍ରଥମ ସଂସ୍କରଣ

**Printed & Pnblished by**

**The Students' Store,**

***AT THE STORE PRESS***

**BERHAMPORE.**

1927

ମୂଲ୍ୟ ୦ ୦ ୵

Price As 3

# ବାଳବିନୋଦ ଗ୍ରନ୍ଥମାଳା



| | | | |
|---|---|---|---|
| ୧ | ଗୋପଲୀଳା | ଶ୍ରୀ ଦାମୋଦର ମିଶ୍ର | ଟ ୦।/ |
| ୨ | ପୁରାଣକଥା ୧ମ ଭାଗ | ଜନୈକ ଶିକ୍ଷକ | ଟ ୦ ୵ |
| ୩ | ମାର୍କଣ୍ଡେୟ | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ, ବି. ଏ | ଟ ୦ ୷ |
| ୪ | ପୁରାଣକଥା ୨ୟ ଭାଗ | ଜନୈକ ଶିକ୍ଷକ | ଟ ୦ ୵୨ |
| ୫ | ଶାନ୍ତାଦେବୀ | ଶ୍ରୀ ଜଗନ୍ନାଥ ମହାପାତ୍ର | ଟ ୦ । |
| ୬ | ଟିକ ରାମାୟଣ | ଶ୍ରୀ ଦାମୋଦର ମିଶ୍ର | ଟ ୦ ।୵ |
| ୭ | ଟିକ ମହାଭାରତ | ଶ୍ରୀ ଗୋଦାବରୀଶ ମହାପାତ୍ର | ଟ ୦ ୳୵ |
| ୮ | ବାଳବୀର ଅଭିମନ୍ୟୁ | ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ର ଶାସ୍ତ୍ରୀ କାବ୍ୟତୀର୍ଥ ସାଂଖ୍ୟତୀର୍ଥ ସାଙ୍ଖ୍ୟରତ୍ନ | ଟ ୦ ୳ |
| ୯ | ବିଶ୍ୱାମିତ୍ର | ଶ୍ରୀ ବାସୁଦେବ ମହାପାତ୍ର | ଟ ୦ ୷ |
| ୧୦ | କର୍ଣ୍ଣ | | ଟ ୦ ୷ |
| ୧୧ | ଅନସୂୟା | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ, ବି. ଏ | (ଯନ୍ତ୍ରସ୍ଥ) |
| ୧୨ | ବାଲ୍ମୀକି | | |
| ୧୩ | ଧ୍ରୁବ | ଶ୍ରୀ ଦୟାନିଧି ମିଶ୍ର, ବି. ଏ., ଏଲ୍. ଟି | ,, |
| ୧୪ | ଯୁଧିଷ୍ଠିର | ଶ୍ରୀ ନୀଳକଣ୍ଠ ଦାସ | |

## Store Story Series

1 Stories from Betala panchavinsati by Ramachandra Acharya, B. A. 0-2-6

2 Seeta by Godavarish Misra, M. A.,B.T. 0-4-0

ଛାତ୍ରଭଣ୍ଡାର ବ୍ରହ୍ମପୁର ( ଗଞ୍ଜାମ ) — THE STUDENTS' STORE, BERHAMPORE.

# ବିଶ୍ୱାମିତ୍ର



ଶ୍ୱାମିତ୍ରଙ୍କୁ ଜଣେ ବଡ଼ ଋଷି ବୋଲି କିଏ ନ ଜାଣେ ? କିନ୍ତୁ ଆଉ ଆଉ ଋଷିମାନଙ୍କ ପରି ବ୍ରାହ୍ମଣ ଘରେ କି ଋଷି କୁଡ଼ିଆରେ ତାଙ୍କର ଜନ୍ମ ନୁହେଁ । ସେ ଜଣେ ରଜା ପୁଅ—ଜାତିରେ କ୍ଷତ୍ରିୟ । ତାଙ୍କ ବାପାଙ୍କ ନାଁ ଗାଧି । ଗାଧି ଉତ୍ତର ଭାରତରେ ଜଣେ ଭାରି ବଳଆର ରଜା ଥିଲେ । ତାଙ୍କ ଘର ସେତେ ବଡ଼ ମୁଲକ ଆଉ କାହାର ନ ଥିଲା । ବଡ଼ ମୁଲକର ରଜା ହେଲେ ବି ସେ ପ୍ରଜାମାନଙ୍କୁ ଠିକ୍ ନିଜର ପୁଅ ପରି ପାଳୁଥିଲେ । ବାପା ଥାଉ ଥାଉ ବିଶ୍ୱାମିତ୍ର ଗାଦିରେ ବସିଲେ—ଯୁବରାଜ ହେଲେ । ଏଥିରେ ପ୍ରଜାମାନେ ଆହୁରି ଖୁସି ହେଲେ—ଆହୁରି ସୁଖରେ ରହିଲେ । କାହିଁକି ନା, ବାପଠୁ ପୁଅ ସବୁ ବିଷୟରେ ବଳିଗଲେ । ବିଶ୍ୱାମିତ୍ର ଯେପରି ପଣ୍ଡିତ, ସେପରି ଧାର୍ମିକ । ତାଙ୍କ ଧର୍ମବିଚାର, ନ୍ୟାୟ ବୁଝାମଣା ଦେଖି ସ୍ୱର୍ଗର ଦେବତାମାନେ ମଧ୍ୟ ଧନ୍ୟ ଧନ୍ୟ କରୁଥିଲେ ।

ଆଉ ଗୋଟିଏ କଥା, ବିଶ୍ୱାମିତ୍ର ବଡ଼ ମନଜାଣି ବା ଏକଜିଦିଆ ଲୋକ । ଯାହା ଇଚ୍ଛା ହେଲା, ସେ ତା କରିବେଇ କରିବେ । ସେ କୌଣସି ବାଧା ବିଘ୍ନ ମାନିବେ ନାହିଁ—ଇନ୍ଦ୍ର ଚନ୍ଦ୍ର ବିରୁଦ୍ଧରେ ଗଲେ ବି ସେ ଡରିଯିବେ ନାହିଁ । ଲୋକେ ତାଙ୍କର ଏହି ମନର ଜୋରକୁ ଅନେକ ସମୟରେ ଭୁଲ ବୁଝିଥାନ୍ତି । ଅନେକେ ଭାବନ୍ତି, ବିଶ୍ୱାମିତ୍ର

ବଡ଼ ରାଗୀ, ନିଷ୍ଠୁର, କଡ଼ା ଧରଣର ଲୋକ । କିନ୍ତୁ ପ୍ରକୃତରେ ତା ନୁହେ । ତାଙ୍କର ଅନ୍ତର ବଜ୍ରଠାରୁ ଟାଣ ସତ, କିନ୍ତୁ ତାହା କୁସୁମ-ଠାରୁ ମଧ୍ୟ କୋମଳ । ଲୋକର ଦୁଃଖ କଷ୍ଟ ଦେଖିଲେ ତାଙ୍କ ହୃଦୟ ଫାଟି ଯାଏ । ବିପନ୍ନଙ୍କୁ ସହାୟ ହେବା, ଆଶ୍ରିତଙ୍କୁ ରକ୍ଷା କରିବା ବିଷୟରେ ତାଙ୍କ ପରି ଲୋକ ଏ ଧରା ଧରିଛି କି ନାହିଁ ସନ୍ଦେହ । ସେତେବେଳେ ସେ କ୍ଷତ୍ରିୟ—କ୍ଷତ୍ରିୟ ପରି ତାଙ୍କର ପ୍ରତିଜ୍ଞା ଅଟଳ । ସେଇ ପ୍ରତିଜ୍ଞା ରକ୍ଷା କରିବାକୁ ତାଙ୍କ ଜୀବନରେ ପଦେ ପଦେ ଯୁଦ୍ଧ—ଘୋର ସଂଗ୍ରାମ । ଯୁଦ୍ଧବେଳେ ଯେ ପଡ଼ନ୍ତି ସେ ଛାଡ଼ ଦେବେ ନାହିଁ ।

ଦିନେ ବିଶ୍ୱାମିତ୍ରଙ୍କର ଇଚ୍ଛା ହେଲା, ରାଜ୍ୟ ବୁଲିଯିବେ, ପ୍ରଜା-ମାନଙ୍କର ଭଲ ମନ୍ଦ ନିଜ ଆଖିରେ ଦେଖି ଆସିବେ । ସାଙ୍ଗେ ସାଙ୍ଗେ ହାତୀ, ଘୋଡ଼ା, ରଥ, ସୈନ୍ୟସାମନ୍ତ, ଚତୁରଙ୍ଗବଳ ବାହାରି ପଡ଼ିଲେ । ସମସ୍ତଙ୍କୁ ନେଇ ବିଶ୍ୱାମିତ୍ର ମହା ଆଡ଼ମ୍ବରରେ ବୁଲି ରାଜ୍ୟ ଦେଖିବାକୁ ଗଲେ । କେତେ ଗାଁ ଗଣ୍ଡା ବୁଲିଲେ, ନଈ ନାଳ, ବଣ ଜଙ୍ଗଲ ପାରି ହେଲେ । କେତେ ତୀର୍ଥ, ଧର୍ମକ୍ଷେତ୍ର, ଦିଅଁ ଦେଉଳ ଦେଖିଲେ । ଶେଷରେ ବୁଲୁ ବୁଲୁ ବଶିଷ୍ଠଙ୍କ ଆଶ୍ରମ ପଡ଼ିଲା । ଏତେ ସ୍ଥାନ ବୁଲି ଗଲେ, କିନ୍ତୁ ସେପରି ପବିତ୍ର, ସେପରି ସୁନ୍ଦର ସ୍ଥାନ ଆଖି ଦେଖି ନ ଥିଲା । ଆଶ୍ରମର ସବୁ ବିଶ୍ୱାମିତ୍ରଙ୍କୁ ଅପୂର୍ବ, ଅଲୌକିକ ବୋଧ ହେଲା । ଯାହା ଦେଖିଲେ, ଆଖି କାଢ଼ି ହେଲା ନାହିଁ—ଯେତେ ଦେଖିଲେ, ନୂଆ ନୂଆ ବୋଧ ହେଲା ।

ଦେଖିଲେ, ଚାରିଆଡ଼େ ଗଛ ଲତା ସବୁ ସୁନ୍ଦର ଫୁଲଫଳ, କଅଁଳ ପତ୍ରରେ ଭରି ରହିଛି । ସବୁବେଳେ ବସନ୍ତ ଋତୁ—ସବୁବେଳେ ମଳୟ ପବନ ବୋହୁଛି । କୋଇଲି, ଶୁଆ, ସାରି ଆଉ ଆଉ, ପକ୍ଷିମାନେ ଗଛ ଡାଳରେ, ଲତାକୁଞ୍ଜମାନଙ୍କରେ ବସି ଆନନ୍ଦରେ ଗାଉଛନ୍ତି । କି ସୁନ୍ଦର ସେ ଛବି, କି କଉତୁକିଆ ସେ ସ୍ୱର ! ମନୁଷ୍ୟ କଥା ଛାଡ଼, ସେଠା ପଶୁ-ପକ୍ଷିମାନଙ୍କର ମଧ୍ୟରେ ବି କଳିଗୋଳ, ହିଂସାଦ୍ୱେଷ କିଛି ନାହିଁ ।

ଗୃହଅଡ଼େ ଶାନ୍ତ, ପରମ ସୁଖ ପୂରି ରହିଛି । ଋଷିମାନଙ୍କ ସଙ୍ଗରେ ରହି, ସିଂହ, ବାଘ ଆଉ ଆଉ ହିଂସ୍ର ଜନ୍ତୁମାନେ ବି ହିଂସା ଛାଡ଼ି ଗାଈ ବାଛୁରି ପରି ଅତଯାତ ହେଉଛନ୍ତି । କେଉଁଠି ସିଂହମାଆ ଠାରୁ ହରିଣଛୁଆ ଦୁଧ ଖାଉଛି, କେଉଁଠି ବାଘମା ଛେଳିଛୁଆକୁ ଗେଲ କରୁଛି—ଗୃହ ଆଡ଼େ ଏଇ ଦୃଶ୍ୟ, ଏଇ ଅପରୂପ ଛବି !

ପୁଣି ଦେଖିଲେ, ଠାଏ ଠାଏ ହୋମ ଲାଗିଛି । ଅଗୁରୁଚନ୍ଦନ, ଝୁଣା, ଗୋଲୁଲ ଧୂଆଁରେ ସବୁ ଆଡ଼ ମହକି ଉଠୁଛି । ଋଷିମାନଙ୍କର ସେ କି ମୂର୍ତ୍ତି, କି ତେଜ ! ଶରୀରର ଜ୍ୟୋତିରେ ସତେ ଅବା ସେଇ ହୋମାଗ୍ନିର ଶିଖା ସଙ୍ଗେ ମିଶି ଯାଉଛନ୍ତି । କେତେଠି ଯୋଗିମାନେ ଯୋଗ ସାଧନ କରୁଛନ୍ତି, ତପସ୍ୱିମାନେ ତପସ୍ୟାରେ ବୁଡ଼ି ରହିଛନ୍ତି—ଡାକିଲେ ଶୁଣୁନାହାଁନ୍ତି, ପଚାରିଲେ ଉତ୍ତର ନାହିଁ । କିଏ ଫଳମୂଳ ଖାଇ, କିଏ ବା ଗଛର ପତ୍ରରେ, କିଏ କେବଳ ପାଣି ପିଇ, କିଏ ବା ଖାଲି ପବନରେ ଜୀବନ ଧରି ଘୋର ସାଧନା କରୁଛନ୍ତି । କେଉଁଠି ବ୍ରାହ୍ମଣମାନେ ଶୁଦ୍ଧପୂତ ମନରେ ମନ୍ତ୍ର ପାଠ କରୁଛନ୍ତି; କେଉଁଠି ବେଦର ମଧୁର ଧ୍ୱନି ଉଠୁଛି । ପବିତ୍ରପ୍ରାଣ ବାଲଖିଲ୍ୟ, ବୈଖାନସମାନେ, ସିଦ୍ଧ, ସାଧକ, ନୈଷ୍ଠିକ ବ୍ରାହ୍ମଣମାନେ ଚଉଦିଗରେ ବେଢ଼ି ବସିଛନ୍ତି—ମଝିରେ ଶରୀରର ତେଜରେ ଚଉଦିଗ ଆଲୋକିତ କରି, ହୃଦୟର ପବିତ୍ରତାରେ ସମସ୍ତଙ୍କୁ ବଳି ଯାଇ, ଗୁରୁ ବଶିଷ୍ଠ ବ୍ରହ୍ମାଙ୍କ ପରି ବିରାଜି ବସିଛନ୍ତି । ଏ ସକଳ ଦେଖି, ବିଶ୍ୱାମିତ୍ର ତନ୍ମୟ ହେଲେ । ହୃଦୟ ଭକ୍ତିରେ ଉଚ୍ଛୁଳି ପଡ଼ିଲା । ଭାବିଲେ, 'ଏ କଣ ମର୍ତ୍ତ୍ୟ ବୈକୁଣ୍ଠ !'

ବାସ୍ତବରେ ବଶିଷ୍ଠଙ୍କ ଏ ଆଶ୍ରମ ସୌନ୍ଦର୍ଯ୍ୟରେ, ପବିତ୍ରତାରେ ବୈକୁଣ୍ଠଠଁ ତଳେ ପଡ଼ି ଯିବ ନାହିଁ । କାହିଁକି ନା, ବେଳେ ବେଳେ ସ୍ୱର୍ଗର ଦେବତା କିନ୍ନର, ସିଦ୍ଧଚାରଣ ଗନ୍ଧର୍ବ ଅନେକେ ଏ ସ୍ଥାନ ଦେଖିବାକୁ ଆସନ୍ତି । ଆଶ୍ରମର ପବିତ୍ର ସୁଖ କିଛି ଦିନ ଭୋଗ କରନ୍ତି ।

ଗଲାବେଳେ ଏ ଆଶ୍ରମ ଛାଡ଼ି ତାଙ୍କୁ ଯିବାକୁ ମନ ବଳେ ନାହିଁ।



## ଆଶ୍ରମରେ ବିଶ୍ୱାମିତ୍ର ରାଜ-ସମ୍ବର୍ଦ୍ଧନା ପାଇଲେ

ବଶିଷ୍ଠଙ୍କୁ ଦେଖିଲା କ୍ଷଣି ବିଶ୍ୱାମିତ୍ର ଗୋଡ଼ତଳେ ପଡ଼ିଯାଇ, ସାଷ୍ଟାଙ୍ଗ ପ୍ରଣାମ କଲେ। ବିଶ୍ୱାମିତ୍ରଙ୍କ ପରି ଗୁଣବାନ୍ ରାଜାଙ୍କୁ ନିଜ

ଦ୍ୱାରରେ ଅତିଥି ଦେଖି ଋଷି ଭାରି ଖୁସି ହେଲେ । ସେଇ କ୍ଷଣି ବସିବାକୁ ଆସନ, ପିଇବାକୁ ବାସନା ପାଣି, ଖାଇବାକୁ ଅରଣ୍ୟର ନାନା ଫଳ-ମୂଳ ଆସି ଥୁଆ ହେଲା । ଖାଇ ପିଇ ଟିକିଏ ଥୟ୍ଯ୍ୟା ହେଲାରୁ ଦୁହିଁଙ୍କ ଭିତରେ କେତେ କଥାବାର୍ତ୍ତା ଚାଲିଲା । ବିଶ୍ୱାମିତ୍ର ପଚାରିଲେ, "ଆପଣଙ୍କର ସାଧନା, ଯୋଗ, ତପସ୍ୟା, ଈଶ୍ୱର ଉପାସନା ସବୁ ନିର୍ବିଘ୍ନରେ ଚାଲୁଅଛି ତ ? ଅଗ୍ନିହୋତ୍ର ଶିଷ୍ୟମାନଙ୍କ ସହିତ, ଆଶ୍ରମର ବୃକ୍ଷ, ଲତା, ଆଉ ସ୍ନେହପାଳିତ ପଶୁମାନଙ୍କ ସହିତ ଆପଣ ସର୍ବମଙ୍ଗଳରେ ଅଛନ୍ତି ତ ?" ବଶିଷ୍ଠ ନିଜର ସମସ୍ତ ମଙ୍ଗଳ ଜଣାଇଲେ—ବିଶ୍ୱାମିତ୍ରଙ୍କୁ ମଧ୍ୟ ତାଙ୍କ ନିଜର, ରାଜ୍ୟର, ଆଉ ପ୍ରଜାମାନଙ୍କର ହାଲଚାଲ ପଚାରି ଗଲେ । ପଚାରିଲେ, "ବିଶ୍ୱାମିତ୍ର, ତୁମ ନିଜର ସବୁ ମଙ୍ଗଳ କି ନା ? ପ୍ରଜାମାନେ ପୁଅ ପରି ଧର୍ମରେ ନ୍ୟାୟରେ ଆଚଯାତ ହେଉଛନ୍ତି କି ନା ? ସାମନ୍ତ ପରିଜନମାନେ, ଭୃତ୍ୟ ଅନୁଚରମାନେ ଉପଯୁକ୍ତ ବେତନ ପାଇ ସନ୍ତୋଷରେ ଆଜ୍ଞା ମାନି ଚାଲୁଛନ୍ତି କି ନା ? ରାଜ୍ୟରେ ଶତ୍ରୁମାନଙ୍କର କିଛି ଉତ୍ପାତ ନାହିଁ ତ ? ସୈନ୍ୟ, ଧନ ଭଣ୍ଡାର, ବନ୍ଧୁବାନ୍ଧବ ସମସ୍ତଙ୍କ ଅବସ୍ଥା ଭଲ ତ ? ସନ୍ତାନ ସନ୍ତତି ଓ ପରିବାରରେ କିଛି ଅଶାନ୍ତି ନାହିଁ ତ ?" ବିଶ୍ୱାମିତ୍ର ଅତି ବିନୟରେ ସକଳ ସମାଚାର ଜଣାଇ କହିଲେ, "ଧର୍ମାତ୍ମନ୍, ଈଶ୍ୱରଙ୍କ ଇଚ୍ଛାରୁ, ଆପଣଙ୍କ ଆଶୀର୍ବାଦରୁ କୌଣସି ଅଭାବ ନାହିଁ— ସବୁ ମଙ୍ଗଳ ।"

ତର୍କରେ, ବିନୟ ମଧୁର କଥାରେ ବଶିଷ୍ଠ ବଡ଼ ସନ୍ତୁଷ୍ଟ ହେଲେ । ତା ପରେ ଧର୍ମ, ରାଜନୀତି, ଜୀବନର କର୍ତ୍ତବ୍ୟ ନାନା ବଡ଼ ବଡ଼ ବିଷୟରେ କଥାବାର୍ତ୍ତା ଚାଲିଲା । ଦୁହିଁଙ୍କ ଯୁକ୍ତି ତର୍କ ବିଚାର ଦେଖି ଦୁହେଁ ଆଶ୍ଚର୍ଯ୍ୟ ହେଲେ । ଶେଷରେ ବଶିଷ୍ଠ କହିଲେ, "ବିଶ୍ୱାମିତ୍ର, ତୁମେ ନିଜେ, ଆଉ ସାଙ୍ଗରେ ଆସିଥିବା ସୈନ୍ୟ ସାମନ୍ତ ସମସ୍ତେ ବଡ଼ କ୍ଳାନ୍ତ ଶ୍ରାନ୍ତ ହୋଇଛ । ଆଜି ସମସ୍ତଙ୍କୁ ଏଠାରେ ରହିବାକୁ ହେବ । ଖାଇ ପିଇ

ଟିକିଏ ସୁସ୍ଥ ହେଲେ ଯିବ । ମୋ କୁଡିଆରେ ମୁହଁ ନ ଧୋଇ ତୁମେ-ମାନେ ଚାଲିଗଲେ, ମନରେ ଦୁଃଖ ରହିବ । ”

ବିଶ୍ୱାମିତ୍ର ଟିକିଏ ଥାଆମାମା ହୋଇ, କହିଲେ—“ ଏ କି କଥା ! ଆପଣଙ୍କ ଚରଣ ଦର୍ଶନ, ଏଇ ତ ଆମର ପରମ ଭାଗ୍ୟ ! ଫଳମୂଳ ଖାଇ ତ ସମସ୍ତେ ସନ୍ତୁଷ୍ଟ ହେଲେଣି । ଆଶୀର୍ବାଦ ଛଡ଼ା ଆଉ ଆମର ବିଶେଷ କିଛି ଲୋଡ଼ା ନାହିଁ । ଅପଣ ସନ୍ତୁଷ୍ଟ ହୋଇ ବିଦାୟ ଦିଅନ୍ତୁ— ଦୁଃଖ କରନ୍ତୁ ନାହିଁ । ”

“ନା, ତା କିପରି ହେବ ? ଫଳମୂଳ ରାଜଯୋଗ୍ୟ ଖାଦ୍ୟ ନୁହେ । ସେଥିରେ ଅରଣ୍ୟବାସିମାନେ ତୃପ୍ତ ହୋଇ ପାରନ୍ତି— ତୁମେ-ମାନେ ସେଥିରେ ତୃପ୍ତ ହେବ କିପରି ? ବିଲମ୍ବ ହେବ ବୋଲି, ଆଗ ଫଳମୂଳ ଅଣିଦେଲି । ନ ଖାଇ, ନ ପିଇ ତୁମେମାନେ ଫେରିଯିବ— ଏ କି କଥା ! ନା, ତା ହେବ ନାହିଁ । ”

ଏଥିରେ ବିଶ୍ୱାମିତ୍ର ଟିକିଏ ବିସ୍ମିତ ହେଲେ । ଭାବିଲେ, “ଏ କଣ, ଋଷି ଏତେ ବଳାଉଛନ୍ତି କାହିଁକି । ବଶିଷ୍ଠ ବନବାସୀ ମୁନି— ବିଶ୍ୱାମିତ୍ର ରାଜାଧିରାଜ—ପୁଣି ସଙ୍ଗରେ ଅସଂଖ୍ୟ ସୈନ୍ୟ-ସାମନ୍ତ ଦାସପରିଜନ ! ଋଷି କୁଡ଼ିଆରେ କି ବିଭବ ଅଛି ଯେ ସମସ୍ତଙ୍କୁ ରାଜଯୋଗ୍ୟ ଖାଦ୍ୟ ପେଯରେ ସନ୍ତୁଷ୍ଟ କରି ଛାଡ଼ିବେ ! ଆମ ଯୋଗ୍ୟ ସାମଗ୍ରୀ ମିଳିବ କୁଆଡୁ ! ଅଚ୍ଛା, ଦେଖାଯାଉ,” ଟିକିଏ ଆଗପଛ ହୋଇ, ଶେଷକୁ ରହିବା ପାଇଁ ରାଜି ହେଲେ ।

ଶବଳା ବୋଲି ବଶିଷ୍ଠଙ୍କର ଗୋଟିଏ କାମଧେନୁ ଥାଏ । ତାର ଏପରି କ୍ଷମତା ଯେ, ବଶିଷ୍ଠ ଯେତେବେଳେ ଯାହା ମାଗିବେ, ସେ ମୁହୂର୍ତ୍ତକେ ତାହା ଅଣି ଥୋଇଦେବ । ବଶିଷ୍ଠ ସେଇ ଶବଳାକୁ ଯାଇ କହିଲେ, “ ମା, ଦେଖୁଛୁ ତ, ରାଜା ବିଶ୍ୱାମିତ୍ର, ଅଉ ତାଙ୍କର ଅସଂଖ୍ୟ ସୈନ୍ୟ ସାମନ୍ତ ଅଜି ଅମ ଦ୍ୱାରରେ ଅତିଥି । ରାଜା ପରେ, କେତେ

କେତେ ଭୋଗ ବିଳାସରେ ସେମାନେ ବଢି ଆସିଛନ୍ତି । ଆମକୁ ସେମାନଙ୍କର ପରିଚର୍ଯ୍ୟା କରିବାକୁ ହେବ— ତାଙ୍କ ଯୋଗ୍ୟ ଖାଦ୍ୟ ସାମଗ୍ରୀରେ ସେମାନେ ସନ୍ତୁଷ୍ଟ ହେବେ । ଯାହାର ଇଚ୍ଛା ଯାହା, ସେ ତା ପାଇବ । ଯେପରି କାହାର କିଛି ଅଭାବ ଅସୁବିଧା ନ ହୁଏ । ଶୀଘ୍ର ସେଥିପାଇଁ ସବୁ ବନ୍ଦୋବସ୍ତ କର । ”

ସତକୁ ସତ ଆଜ୍ଞା ମାତ୍ରକେ ଶବଳା କ୍ଷଣକେ ସବୁ ବନ୍ଦୋବସ୍ତ କରି ଦେଲା । ପୁରି, ମହନଭୋଗ, ଖିରି, ଖେଚେଡି, କାକରା, ଡାଲିଆ, ଅମାଲୁ ଗଦା ଗଦା ହୋଇ ଥୁଆ ହେଲା । ଚର୍ବ୍ୟ, ଚୂଷ୍ୟ, ଲେହ୍ୟ, ପେୟ ଦ୍ରବ୍ୟ ସାମଗ୍ରୀ ସବୁ ସୁନା ରୁପାର ପାତ୍ରରେ ପ୍ରତ୍ୟେକ ପାଇଁ ସଜା ହୋଇ ବଢ଼ାଗଲା । ବସିବା ପାଇଁ ଦିବ୍ୟ ଆସନ— ପିଇବାକୁ ସୁବାସ ଜଳ, ଯାହାକୁ ଯାହା ଯିଏ— ସବୁ ଠିକ୍ ଠାକ୍ ! ଖୁଣିବାକୁ କିଛି ରହିଲା ନାହିଁ । ଅଦ୍ଭୁତ ଆଶ୍ଚର୍ଯ୍ୟ, ଲୋକର ମନ ଜାଣି ସବୁ ସାମଗ୍ରୀ ଆସି ପରସା ହେଲା— ଖୋଜିଲା ବେଳକୁ ଆଗରେ ଥୁଆ ! ସମସ୍ତେ ସୁ ଖୀ ହୋଇ ଖାଇଲେ, 'ତୃପ୍ତତୃପ୍ତ' କହି ଉଠିଲେ । ଗୋଟିଏ ପଶୁ ପ୍ରାଣୀର ଏ ଅଲୌକିକ କାଣ୍ଡ ଦେଖି, ସମସ୍ତେ ଅବାକ୍ ହେଲେ ।



## ଶବଳା ମୋର ହେବ

ବିଶ୍ୱାମିତ୍ର ସମ୍ରାଟ । ତାଙ୍କର ବଡ଼ ମୁଲକ, ଅପାର ବିଭବ, ଭୋଗ ବିଳାସର ସକଳ ଉପକରଣ ଅଛି ସତ; କିନ୍ତୁ ଏପରି ଗାଈ ତ ନାହିଁ ! କିଛି ନ ଥାଉ, ଏ ଗାଈଟି ସଙ୍ଗରେ ଥିଲେ, ଆଉ ଅଭାବ କଣ ? ଯେତେବେଳେ ଇଚ୍ଛା ହେଲା, କ୍ଷଣକେ ପୂର୍ଣ୍ଣ ହେବ— ଇନ୍ଦ୍ର-ସମ୍ପଦ ଖୋଜିଲେ ବି ମିଳିବ । ବିଶ୍ୱାମିତ୍ରଙ୍କର ଗାଈଟିରେ ବଡ଼ ଲୋଭ

ହେଲି । ମନେ ହେଲା, ଏ ଗାଈଟି ନ ଥିବାରୁ ତାଙ୍କର ସକଳ ଯୋଗ, ସକଳ ସୁଖ ଅପୂର୍ଣ୍ଣ ରହିଅଛି । ପ୍ରତିଜ୍ଞା କଲେ, 'ଶବଳା ନିଶ୍ଚୟ ମୋର ହେବ ।' ସେହି ଶବଳାର ଭାବନାରେ ଅସ୍ଥିର ହୋଇ, ବିଶ୍ୱାମିତ୍ର ବଶିଷ୍ଠଙ୍କୁ କହିଲେ, "ଆପଣଙ୍କର ଏ ଗାଈଟି, ସମସ୍ତ ସତ୍‌କାର ଜୀବନରେ ଭୁଲି ପାରିବୁ ନାହିଁ । ଆମେମାନେ ପରମ ପରିତୃପ୍ତ ହୋଇଅଛୁଁ । ତେବେ ଅଉ ଗୋଟିଏ କଥା ବାକି ରହିଯିବ କାହିଁକି ? ଆପଣ



ତା ମଧ୍ୟ ପୂର୍ଣ୍ଣ କରନ୍ତୁ । ମୋର ରାଜ୍ୟ ଅଛି, ବିଭବ ଅଛି, ଉପଭୋଗର ନାନା ସାମଗ୍ରୀ ଅଛି, ସବୁ ଅଛି; କିନ୍ତୁ ଶବଳା ପରି ଗୋଟିଏ ଗାଈ ନାହିଁ । ଆପଣ ବନବାସୀ— ଭୋଗବିଳାସ ସବୁ ଛାଡ଼ି ବସିଛନ୍ତି । ଖାଇବା ପାଇଁ କିଛି ଦୁଧ, ଯଜ୍ଞ ପାଇଁ କିଛି ଘିଅ ହେଲେ ଆପଣଙ୍କର ଯଥେଷ୍ଟ । ଆପଣଙ୍କର ଶବଳା ହେବ କଣ ? ମୋତେ ଶବଳାକୁ ଦିଅନ୍ତୁ— ମୁଁ ବଦଳରେ ଭଲ ଭଲ ଏକ ଲକ୍ଷ ଦୁଧିଆଳୀ ଗାଈ ଦେବି । ଗାଈଟିରେ ମୋର ବଡ଼ ମନ ବଳୁଛି— ଆପଣ ନାହିଁ କରନ୍ତୁ ନାହିଁ । ମୁଁ ରାଜ୍ୟର ସମ୍ରାଟ୍, ସବୁ ଭଲ ଭଲ ଜିନିସ ମୋର ପାଖରେ ସୁନ୍ଦର ଦିଶିବ । ”

ଧୀର ଗମ୍ଭୀର ଭାବରେ ବଶିଷ୍ଠ ଉତ୍ତର ଦେଲେ, “ବାପ୍ପା ହେଲ ବିଶ୍ୱାମିତ୍ର, ଶବଳାକୁ ଛାଡ଼ି ମୁଁ କି ରହି ପାରିବି ? ଲକ୍ଷେ କାହିଁକି, କୋଟି କୋଟି ଗାଈ ବି ଶବଳାକୁ ଲକ୍ଷ୍ୟ ହେବେ ନାହିଁ । ସୁନା ରୁପାରେ ମୋତେ ପୋତି ପକାଇଲେ ବି, ମୁଁ ଶବଳାକୁ ଦେଇ ପାରିବି ନାହିଁ । ଶବଳା ଓ ମୋର ସମ୍ପର୍କ ଅଚ୍ଛେଦ୍ୟ— ଅନନ୍ତ କାଳରେ ମଧ୍ୟ ଛିଣ୍ଡିବାର ନୁହେ । ସମସ୍ତ କୀର୍ତ୍ତି, ସକଳ ପୁଣ୍ୟକର୍ମ ପରି ଶବଳା ମୋ ଜୀବନର ସଙ୍ଗିନୀ । ଶବଳା ନ ଥିଲେ, ଅଗ୍ନି, ଦେବତା, ପିତୃପୁରୁଷମାନଙ୍କର ପୂଜା କରି ପାରିବି ନାହିଁ— ସାଧୁ, ସନ୍ନ୍ୟାସୀ, ଅତିଥି, ବ୍ରାହ୍ମଣ, ଅଭ୍ୟାଗତମାନଙ୍କର ସତ୍କାର ମୋ କୁଟିରରେ ଅସମ୍ଭବ ହେବ । ଶବଳାର ଦୁଗ୍ଧରେ ପ୍ରାଣ ରହିଛି । ଏ ମସ୍ତିଷ୍କରେ ବୁଦ୍ଧି, ଶରୀରରେ ସ୍ୱାସ୍ଥ୍ୟ, ପ୍ରାଣରେ ପବିତ୍ରତା ସଞ୍ଚାର ତାରି ଦୟା । ଶବଳା ଏ ସଂସାରରେ ମୋର ଏକମାତ୍ର ଆଶ୍ରୟ । ଶବଳା ମୋର ସୁଖର ଭଣ୍ଡାର— ଶବଳା ମୋର ସର୍ବସ୍ୱ । ସେଥିପାଇଁ କହୁଛି, ତା ପାଇଁ ଆଉ ମନ ବଳାଅ ନାହିଁ— ମୁଁ ଦେଇ ପାରିବି ନାହିଁ । ”

ବଶିଷ୍ଠଙ୍କ ଶବଳା ପ୍ରତି ଏ ଅପାର ସ୍ନେହ, ଦେବାକୁ ଘୋର ଅନିଚ୍ଛା ଦେଖି, ବିଶ୍ୱାମିତ୍ରଙ୍କର ଲାଳସା ଆହୁରି ବଢିଗଲା । ସେ ପୁଣି

ଲୋଭ ଦେଖାଇ ଲାଗିଲେ, ସେଥିରେ ନ ଭୋଳେ ତ, ସୁବର୍ଣ୍ଣ ବିମଣ୍ଡିତ ଶତ ଶତ ହାତୀ ଦେବି— ସୁନାରେ ତିଆରି, ମଣିମୁକ୍ତାରେ ବିଭୂଷିତ ରଥ ଦେବି— ଉଚ୍ଚୈଃଶ୍ରବା ଠାରୁ ଜାତ କମ୍ବୋଜ ଦେଶର, ବାହ୍ଲୀକ ଦେଶର ଭଲ ଭଲ ଘୋଡ଼ା ଦେବି— ଆଉ ମଣି ମୁକ୍ତାପ୍ରବାଳ, ବହୁ-ମୂଲ୍ୟ ରତ୍ନ ସବୁ, ଯାହା ଇଚ୍ଛା ତାହା ଦେବି— ଆପଣ ମୋତେ କେବଳ ଏ ଗୋ-ରତ୍ନଟି ଦିଅନ୍ତୁ । ମୋର ଠାରେ ରହିଲେ ଏପରି ରତ୍ନ ମାନବ । ”

ବଶିଷ୍ଠ ଏଥିରେ ମହା ବିରକ୍ତ ହୋଇ କହିଲେ, “ଋଷିପୁତ୍ରକ ! ବୃଥା ଆଶା ! ମୁଁ ଶବଳାକୁ ଛାଡି ପାରିବି ନାହିଁ— ନିଶ୍ଚିତ କଥା, କେବେ ହେଲେ ଛାଡି ପାରିବି ନାହିଁ । ମୋତେ ସମ୍ପଦ ଦେଖାଉଛ— ମଣିମୁକ୍ତା ରତ୍ନରାଜି କଥା କହୁଛ ! ଶବଳା ଥିଲେ, ମୋତେ କିଛି ଅପୂର୍ବ ନୁହେ । ତୁମ ପରି ରାଜ୍ୟ, ସକଳ ସମ୍ପଦ, ତୁମର ଏ ସମ୍ରାଟ-ମୁକୁଟ ଶବଳା ପାଖେ କିଛି ନୁହେ— ଇଚ୍ଛା କଲେ ଶବଳା କ୍ଷଣକେ ଇନ୍ଦ୍ର ସମ୍ପଦ ଦେଇ ପାରେ । ”

ଏ କଡ଼ା କଥା ଶୁଣି, ବିଶ୍ୱାମିତ୍ର କ୍ରୋଧରେ ଜଳି ଉଠିଲେ । ଭାବିଲେ, “ଛାର ଭିକାରୀ ବ୍ରାହ୍ମଣ, ତାର ପୁଣି ଏଡ଼େ ବଢ଼ାଇ ! ବିଶ୍ୱାମିତ୍ରର ମୁହଁକୁ ବି ଟିକିଏ ଗୁହାଁଳୁ ନାହିଁ । ଅଚ୍ଛା, ମୁଁ ବଳଜୋରେ ଶବଳାକୁ ନେଇ ଯିବି, କିଏ ବାଧା ଦେବ ଦେଖିବା । ” ଏହିପରି ଭାବି ବିଶ୍ୱାମିତ୍ର ଗାଈଟିକୁ ଓଠାରି ଓଠାରି ନେଇ ଯିବାକୁ ବସିଲେ । ଶବଳାର ଦୁଇ ଆଖିରୁ ଧାର ଧାର ଲୁହ ବହି ଯାଉଥାଏ । ଭାବୁଥାଏ, “ ଆହା, ସତେ କଣ ଋଷି ମୋତେ ଛାଡ଼ି ଦେବାକୁ ଇଚ୍ଛା କରୁଛନ୍ତି ! ସେବାରେ ତ ମୁଁ କେବେ କିଛି ତ୍ରୁଟି କରି ନାହିଁ । ଅନ୍ତରେ ବାହାରେ ସେଇ ତ ମୋର ଆରାଧ୍ୟ ଦେବତା— ତାଙ୍କର ପାଇଁ ତ ସ୍ୱର୍ଗ ଛାଡ଼ି ଆସିଲି ! ତେବେ ଏ କଣ ! ତାଙ୍କର ଆଖି ଆଗରେ ମୋତେ କେତେ କଷ୍ଟ

ଦେଇ ଭିଡ଼ ଭିଡ଼ ନେଇ ଯାଉଛନ୍ତି— ଋଷି କପଟର ଯୀ ଦେଖି, ସହି, ଧୀର ହୋଇ ବସି ରହିଛନ୍ତି ! ମୁଁ ଯିବା କଣ ତେବେ ତାଙ୍କର ଇଚ୍ଛା ! ଅଚ୍ଛା, ପଚ୍ଚରେଁ । ” ଏହିପରି ଭାବି ଶବଳା ପଚାରିଲା, “ ଆପଣ କଣ ମୋତେ ଛାଡ଼ି ଦେଉଛନ୍ତି ? ”

ଶବଳାର କଷ୍ଟ ଦେଖି ଋଷିଙ୍କ ହୃଦୟ ଦହି ହୋଇ ଯାଉଥିଲା— ତା ଉପରେ ପୁଣି ଏ ପ୍ରଶ୍ନ । ଆଉ କି ଧୈର୍ଯ୍ୟ ଧରି ହୁଏ ! ଦୁଇ ଆଖିରୁ ଟପ ଟପ ଲୁହ ଗଡ଼ି ପଡ଼ିଲା— ବହୁ ଚେଷ୍ଟା କରି ବି ବଶିଷ୍ଠ ତାହା ବାରଣ କରି ପାରିଲେ ନାହିଁ । କରୁଣ ସ୍ୱରରେ କହିଲେ, “ମୁଁ କି ତତେ ଛାଡ଼ି ଦେଇ ପାରେ ଶବଳା ! ତୁ ଯେ ମୋର ନିରାଶ୍ରୟର ଆଶ୍ରୟ, ଦୁର୍ବଳର ଧନ, କାଙ୍ଗାଳର ସଂଖାଳି । ମୋର ଜପଯଜ୍ଞ, ଧ୍ୟାନ ଧାରଣା, ସାଧନା ସିଦ୍ଧି ସବୁ ଯେ ତୁ ! ସଂସାରରେ ସକଳ ସୁଖ ସେ ତୋର ସ୍ନେହ ଭିତ୍ତି ପାଇଛି । ମାତା, ପତ୍ନୀ, ଭଗିନୀ, କନ୍ୟା ସମସ୍ତଙ୍କୁ ବଳି ତୁ ଏ ପ୍ରାଣ ଅଧିକାର କରି ବସିଛୁ ଧନ ! ପ୍ରାଣ ଯାଉ, ମୁଁ କି ତତେ ଛାଡ଼ି ଦେଇ ପାରେ ? କି ଦୋଷ ତୋର ? ତେବେ, ମୁଁ ଭିକ୍ଷାରୀ ବ୍ରାହ୍ମଣ, ଶକ୍ତି ନାହିଁ— ସାମର୍ଥ୍ୟ ନାହିଁ । ପୁଣି ବିଶ୍ୱାମିତ୍ର ମହା ଶକ୍ତିଶାଳୀ ରାଜା— ପୃଥିବୀର ଶାସନ ତା'ର ହାତରେ । ଏଇ ଦେଖ, ଚତୁର୍ଦ୍ଦିଗରେ କେତେ ହାତୀ, ଘୋଡ଼ା, ରଥ, ସୈନ୍ୟ ସାମନ୍ତ ପୂରି ରହିଛନ୍ତି । ଯେତେବେଳେ ଶକ୍ତିଶାଳୀ ସମ୍ରାଟ୍ ପ୍ରତାପ ଦେଖାଇ ତତେ ଟାଣି ନେଇ ଯିବାକୁ ପ୍ରସ୍ତୁତ— ମୋର କି ଶକ୍ତି ଅଛି ଯେ, ମୁଁ ରକ୍ଷା କରି ପାରିବି ? କ୍ଷୁଦ୍ର ବନବାସୀ— ମୁଁ କି ଏଥିକି ପାରିବି ? ”

“କଣ କହୁଚନ୍ତି, ବ୍ରାହ୍ମଣର ଶକ୍ତି ଠାରୁ କ୍ଷତ୍ରିୟର ଶକ୍ତି ବଡ଼ ! ବ୍ରାହ୍ମଣର ଧର୍ମ, ଜ୍ଞାନ, ସାଧନା ଅସାର ସମ୍ରାଟ ବଳବୀର ତଳେ ପଡ଼ିଯିବ ? ବୃଥା କଥା । ତେବେ ଯୁଗେ ଯୁଗେ ବ୍ରାହ୍ମଣର ଏ ଆଦର, ଏ ସମ୍ମାନ କାହିଁକି ? — ବେଦ ପୁରାଣରେ ବ୍ରାହ୍ମଣର ତେଜ, ବ୍ରାହ୍ମଣର ଶକ୍ତି,

ବ୍ରାହ୍ମଣର ମହିମା କାହିଁକି ଏତେ ଲେଖାଅଛି ? କାହିଁକି ତେବେ, ସେହି ବ୍ରାହ୍ମଣର ପଦାଘାତରେ ପଦରେଣୁ ପାଇ, ନିଜେ ପରମ ଚକ୍ରୀ-ମଣି କୃତାର୍ଥ ମନେ କରୁଥିଲେ ? ବିଶ୍ୱାମିତ୍ର ଛାର କ୍ଷତ୍ରିୟ ରାଜା—ଆପଣ ବ୍ରାହ୍ମଣ-ଶିରୋମଣି ବ୍ରହ୍ମର୍ଷି। ହୁଅନ୍ତୁ ସେ ପ୍ରତାପଶାଳୀ ସମ୍ରାଟ୍, ଥାଉ ତାଙ୍କର ଇନ୍ଦ୍ରସମ୍ପଦ— ତାଙ୍କର ଆସନ, ଆପଣଙ୍କର ଏହି ଚରଣ ତଳେ। କି ଶକ୍ତି ତାଙ୍କର ! ଏହି ଆପଣ ଆଦେଶ ଦିଅନ୍ତୁ— ଶବଳା କ୍ଷଣକେ ସକଳ ଚୂର୍ଣ୍ଣ କରି ଦେଇ ପାରେ— ସୈନ୍ୟ ସାମନ୍ତ ରଥ ହାତୀଘୋଡ଼ାରେ ପୃଥିବୀ ପୂର୍ଣ୍ଣ କରି, ଏହି ବିଶ୍ୱାମିତ୍ରଙ୍କୁ ନିଜ ଦଳବଳ ସହିତ ଭସ୍ମ କରିପାରେ ! ବ୍ରାହ୍ମଣର ଇଚ୍ଛାହିଁ ଶକ୍ତିରୂପେ ଏ ସୃଷ୍ଟିକି ବଞ୍ଚାଇ ରଖିଅଛି— ଆପଣ କଦାପି ଦୁର୍ବଳ ନୁହନ୍ତି।"

ବଶିଷ୍ଠଙ୍କ ମୁଖମଣ୍ଡଳରେ ସନ୍ତୋଷ ଖେଳି ଗଲା। ତଥାପି ଗର୍ବ, କ୍ରୋଧ, ଅହଂକାରର ଲେଶ ନାହିଁ। ସେହିପରି ଶାନ୍ତ କରୁଣ ଭାବରେ କହିଲେ, "ହଉ ତେବେ ମା, ସେଇଆ ହେଉ। ମୋର ଆଶୀର୍ବାଦରେ ତୁ ତୋର ରକ୍ଷା ପାଇଁ ସମର୍ଥ ହୁଅ।"

ଶବଳା କ୍ରୋଧରେ ଗୋଟିଏ ହୁଁକାର ଛାଡ଼ିଲା। ସଙ୍ଗେ ସଙ୍ଗେ ଶତ ସହସ୍ର ପହ୍ଲବ ସୈନ୍ୟ ଭୀଷଣ ଅସ୍ତ୍ରଶସ୍ତ୍ର ଧରି ପ୍ରବଳ ବେଗରେ ବାହାରି ପଡ଼ିଲେ। ଶୁହୁଁ ଶୁହୁଁ ବାଣ ମାରି, ପିଟାପିଟି କରି ଶତ୍ରୁମାନଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲେ। ବିଶ୍ୱାମିତ୍ର ସାମାନ୍ୟ ରଥୀ ନୁହନ୍ତି— ଘୋର ଯୁଦ୍ଧ କରି, ଅଳ୍ପ ସମୟ ମଧ୍ୟରେ ପହ୍ଲବ ସୈନ୍ୟମାନଙ୍କୁ ନିଃଶେଷ କରି ଦେଲେ ! ନିଜର ସୈନ୍ୟ ନାଶ ଦେଖି, ଶବଳା ଆହୁରି ରାଗି ଗଲା। ପୁଣି ଗୋଟିଏ ହୁଁକାର ଛାଡ଼ିଲା— ସେହି ମୁହୂର୍ତ୍ତରେ ଶକ, ଯବନ, କମ୍ବୋଜ, କୋଟି କୋଟି ସୈନ୍ୟରେ ଚତୁର୍ଦ୍ଦିଗ ପୂରି ଗଲା। ବିଶ୍ୱାମିତ୍ର ଭୀମ ବିକ୍ରମରେ ଦ୍ୱିତୀୟ ବାର ମଧ୍ୟ ଶତ୍ରୁ ସୈନ୍ୟଙ୍କୁ ପରାସ୍ତ କରି ଦେଲେ। ଶବଳା ଦେଖିଲେ ଆହୁରି ରାଗି ଯାଇ, ପୁଣି ଗୋଟିଏ ଭୟଙ୍କର

ହୁଁକାର ଛାଡ଼ିଲା । ଆଉ ରକ୍ଷା ନାହିଁ ! ବାପ୍‌ରେ ବାପ୍, କି ଭୀଷଣ ସୈନ୍ୟ ! କି ଭୀଷଣ ଅସ୍ତ୍ର ଶସ୍ତ୍ର ! ଆଉ ତାଳଗଛ ପରି କେଡ଼େ କେଡ଼େ ମୂର୍ତ୍ତି ! ଆଖି ବୁଜି ହୋଇ ଗଲା— ଉପରେ ଚାହିଁ ହେଲା ନାହିଁ । ସେଥିରେ ଶକ, ଯବନ, ମ୍ଲେଚ୍ଛ, ହରିତ, କିରାତ ପୃଥିବୀର ସବୁ ଠାରୁ ଦୁଷ୍ଟ ଦୁର୍ଦ୍ଦାନ୍ତ ସକଳ ପ୍ରକାର ବୀର ଅଛନ୍ତି । ଚତୁର୍ଦ୍ଦିଗରେ ଯେ ପର୍ଯ୍ୟନ୍ତ ଆଖି ଯାଇ ପାରେ ଖାଲି ମୁଣ୍ଡମାଳ — ଭୂମି ଦିଶୁ ନାହିଁ ! ବିଶ୍ୱାମିତ୍ରଙ୍କର ଗୋଟି ଗୋଟିକୁ ଏମାନେ ଦଶ ଦଶଟି ହୋଇ ମାଡ଼ି ପଡ଼ିଲେ । କ୍ଷଣକ ମଧ୍ୟରେ ବିଶ୍ୱାମିତ୍ରଙ୍କ ସକଳ ତେଜ ମଉଳି ପଡ଼ିଲା—ସେ ଗର୍ବ ଅହଂକାର ଚୂର୍ଣ୍ଣ ହେଲା । ଚାହୁଁ ଚାହୁଁ ତାଙ୍କର ସକଳ ସୈନ୍ୟ ସାମନ୍ତ ହାତୀ ଘୋଡ଼ା ଗୋଟି ଗୋଟି ହୋଇ, ତାଙ୍କରି ଆଖି ଆଗରେ ଝଳି ପଡ଼ିଲେ । ବିଶ୍ୱାମିତ୍ରଙ୍କ ସଙ୍ଗେ ତାଙ୍କର ଶହେ ପୁଅ ଆସିଥିଲେ । ସେମାନେ ରାଗରେ ଅନ୍ଧ ହୋଇ, ବଶିଷ୍ଠଙ୍କୁ ମାରି ପକାଇବାକୁ ବାହାରିଲେ । ଶବଳା ତାହା ଦେଖି ରାଗରେ ପ୍ରକମ୍ପିତ ହୋଇ, ଆଉ ଗୋଟିଏ ଭୟଙ୍କର ହୁଂକାର ଛାଡ଼ିଲା । ସେ ହୁଂକାରରେ ବନଅଗ୍ନି ପରି ଅଗ୍ନି ଜଳି ଉଠିଲା— ଶହେଟି ଯାକ ପୁଅ ପୋଡ଼ି ପାଉଁଶ ହୋଇ ଜମା ହେଲେ । ବିଶ୍ୱାମିତ୍ରଙ୍କ ସକଳ ବଳ ଶେଷ !



## ଶିବଙ୍କ ବର

ରାଗରେ, ଲଜ୍ଜାରେ, ବେଦନାରେ ବିଶ୍ୱାମିତ୍ର ଛଟପଟ ହେଲେ । ଏତେ ବଡ଼ ସମ୍ରାଟ ! ପ୍ରତାପରେ ସାରା ପୃଥିବୀ ଥରହର ହୋଇ କମ୍ପୁଛି— ତାଙ୍କର ପୁଣି ଭିକ୍ଷାରୀ ବ୍ରାହ୍ମଣଟା ନିକଟରେ ଏ ପରାଭବ ! ପ୍ରାଣରୁ ଅଧିକ ପୁତ୍ରମାନେ, ସ୍ନେହର ସାମନ୍ତ ପରିଜନମାନେ ଗୋଟି ଗୋଟି ହୋଇ

ନିଜର ଆଖି ଆଗରେ ଟଳି ପଡ଼ିଲେ— ବିଶ୍ୱାମିତ୍ରଙ୍କର ଶକ୍ତି ହେଲା ନାହିଁ ଯେ, ତାଙ୍କ ବିପଦରେ ସହାୟ ହେବେ, କୌଣସି ପ୍ରକାରେ ରକ୍ଷା କରିବେ ! ଧିକ୍ ଦେହ ସହେ ! ଅନ୍ତରର ଜ୍ୱାଳାରେ ଅସ୍ଥିର ହୋଇ ବିଶ୍ୱାମିତ୍ର ପ୍ରତିଜ୍ଞା କଲେ, "ନିଶ୍ଚୟ ଏହାର ପ୍ରତିଶୋଧ ନେବି— ଦୈବୀ ବଳ ସଞ୍ଚୟ କରି, ଛାର ବ୍ରାହ୍ମଣର ଏ ଗର୍ବ ଅହଂକାର ଚୂର୍ଣ୍ଣ କରିବି ।"

ବିଶ୍ୱାମିତ୍ର ରାଜ ଭୋଗ ତ୍ୟାଗ କଲେ । ପାଟ ପୀତାମ୍ବରୀ ଛାଡ଼ି କୌପୀନ ନେଲେ । କଠିନ ତପସ୍ୟା ପାଇଁ ହିମାଳୟର ଭୀଷଣ ଅରଣ୍ୟ ପସନ୍ଦ ହେଲା । ଉତ୍ତର, କନ୍ଦର ଦେଶ ପାର ହୋଇ, କୈଳାସ ପର୍ବତ ପାଖେ ଯୋଗାସନରେ ବସି ମହାଦେବଙ୍କର ଆରାଧନା କଲେ । ଓଃ ସେ କି ତପସ୍ୟା ! ପୁଅ ପର ବର୍ଷବର୍ଷ ବିତିଗଲା— ତଥାପି ସେ ତପସ୍ୟା ସଫଳ ହେଲା ନାହିଁ ! ଶେଷକୁ ହର ପାର୍ବତୀଙ୍କ ଆସନ ସେ ତପସ୍ୟାରେ ଟଳମଳ ହେଲା । ସେମାନେ ଅଥୟ ହୋଇ ଆସି କହିଲେ, "ତୁମେ କୋଟି କୋଟି ଲୋକର ମଉଡ଼ ମଣି, ଭୋଗବିଳାସରେ ଆଜନ୍ମରୁ ବଢ଼ିଆସିଛ— ରାଜଅଙ୍ଗରେ ତୁମର ଏ କଠୋର ତପସ୍ୟା କାହିଁକି ? କି ଆଶାରେ ସକଳ ସୁଖ ବଳି ଦେଇ, ତପସ୍ୟାର ଏ କଷ୍ଟ ସହୁଛ ? ତୁମ ପୂଜାରେ ବଡ଼ ସନ୍ତୁଷ୍ଟ ହେଲୁ । କି ବର ମାଗୁଛ ମାଗ, କି ଇଚ୍ଛା ଅଛି କହ, ଆମେ ପୂର୍ଣ୍ଣ କରିବୁ ।"

ହର ପାର୍ବତୀଙ୍କୁ ନିଜର ଦୁଇ ଆଖିରେ ଦେଖି ବିଶ୍ୱାମିତ୍ର ଆନନ୍ଦଭୋଳ ହୋଇଗଲେ । ଚରଣ ତଳେ ପଡ଼ି କହିଲେ, "ହେ ପରମ ପିତା ମାତା, [illegible]ଦ ଅନୁଗ୍ରହ ହେଲା, ତେବେ ପୃଥିବୀରେ ଯେତେ ଯେତେ ଭୟଙ୍କର ଅସ୍ତ୍ର ଶସ୍ତ୍ର ଅଛି, ମୋତେ ମିଳୁ; ସକଳ ଯୁଦ୍ଧବିଦ୍ୟା, ସମସ୍ତ ସମର-କୌଶଳ ମୋତେ ଜଣା ପଡ଼ୁ । ଗୁଣି, ଗାରଡ଼ି, ମନ୍ତ୍ର, ଯନ୍ତ୍ର, ସକଳ ପ୍ରକାର ମାୟା ଯୁଦ୍ଧରେ ମୁଁ ପାରଗ ହୁଏ । ଦେବ, ଅସୁର, ଯକ୍ଷ, ରାକ୍ଷସ, ଗନ୍ଧର୍ବ, କିନ୍ନର, ସିଦ୍ଧସାଧକ, ଋଷି ସନ୍ନ୍ୟାସୀ ସ୍ୱର୍ଗ ମର୍ତ୍ତ୍ୟ ପାତାଳ--

ତିନି ଭୁବନରେ ଆଉ ଯେଉଁ ଯେଉଁ ବୀରମାନେ ଅଛନ୍ତି, ସମସ୍ତଙ୍କ ସଙ୍ଗେ ଯୁଦ୍ଧ କରି, ଜୟଲାଭ କରିବାକୁ ମୋତେ ଶକ୍ତି ଦିଅ ।" ମହାଦେବ ପାର୍ବତୀ 'ତଥାସ୍ତୁ'--- ସେଇଆ ହେଉ କହି, ଉଭାଇଗଲେ ।

ସତକୁ ସତ, ସେଇଦିନଠାରୁ ସକଳ ଅସ୍ତ୍ର ଶସ୍ତ୍ର ଆସି ଆଗରେ ପହଞ୍ଚି ଗଲା— ବିଶ୍ୱାମିତ୍ରଙ୍କୁ ସକଳ ପ୍ରକାର ମନ୍ତ୍ର ଯନ୍ତ୍ର, ଯୁଦ୍ଧବିଦ୍ୟା ଜଣା ପଡ଼ିଲା । ବର୍ତ୍ତମାନ ଗର୍ବରେ, ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଭାବିଲେ, "ଆଉ ବ୍ରାହ୍ମଣର ନିସ୍ତାର ନାହିଁ— ସାପ ସଙ୍ଗେ ଖେଳିବା ସହଜ କଥା ନୁହେଁ । ଏତେ ଦିନ ପରେ ବଶିଷ୍ଠ ବୁଝିବ— ବିଶ୍ୱାମିତ୍ରଙ୍କ ଭୀଷଣ ଜନ୍ମ ।'

ରାଗରେ ଚୋଠାକ ପାଚୋଠା ହୋଇ, ବିଶ୍ୱାମିତ୍ର ବଶିଷ୍ଠଙ୍କ ଆଶ୍ରମରେ ଆସି ପହଞ୍ଚିଲେ । ପହଞ୍ଚିଲାକ୍ଷଣି ଯେତେ ଦିବ୍ୟ ଅସ୍ତ୍ର ଶସ୍ତ୍ର ସବୁ ଛାଡ଼ି ଦେଲେ । ସେ ସେ ପ୍ରଳୟ କାଣ୍ଡ ! ତପୋବନର ଗଛ ଆଡ଼େ ହୁରୁ ହୁରୁ ହୋଇ ଅନଳ ଜଳି ଉଠିଲା । ଯୋଗିଋଷିମାନେ ଅସ୍ତବ୍ୟସ୍ତ ହୋଇ ସ୍ଥାନ ଛାଡ଼ି ପଳାଇ ଗଲେ । ଆଉ ଜୀବଜନ୍ତୁ, ସ୍ନେହପାଳିତ ଆଶ୍ରମ ମୃଗ-ମାନଙ୍କ ଅବସ୍ଥା କାହିଁକି କହିବା ? ପ୍ରାଣ ନେଇ ପଳାଉ ପଳାଉ କିଏ ସେଇ ନିଆଁରେ ପଡ଼ି ମଲା— କିଏ ପ୍ରାଣ ବିକଳରେ କେଉଁ ଆଡ଼େ ପଳାଇ ଲୁଚି ରହିଲା । ମୁହୂର୍ତ୍ତ ମଧ୍ୟରେ ସୁଖମୟ ଆଶ୍ରମ ଛାରଖାର ହୋଇଗଲା । ସେ ଶାନ୍ତି, ସୌନ୍ଦର୍ଯ୍ୟ ବିଲୁପ୍ତ ହେଲା— ସକଳ ସୁଖ-ମୟ ଚିତ୍ର ଲୁଚିଗଲା ।

ଏ ପର୍ଯ୍ୟନ୍ତ ବଶିଷ୍ଠ ଧୈର୍ଯ୍ୟ ଧରି ରହିଥିଲେ । କିନ୍ତୁ ଆଉ ସହି ହେଲା ନାହିଁ । ଋଷି ସନ୍ନ୍ୟାସୀ ଯୋଗିଜନଙ୍କ ଦୁଃଖ, ସ୍ନେହପାଳିତ ଜୀବ-ଜନ୍ତୁଙ୍କର ଏ ଦୁର୍ଦ୍ଦଶା ଭାରି ବାଧିଲା । କ୍ରୋଧରେ, ଘୃଣାରେ ଦେହ ବରଡ଼ାପତ୍ର ପରି କମ୍ପିଲା— ବଜ୍ରପାତ ପରି ଗରଜି ଉଠି କହିଲେ, "ମୂର୍ଖ, ନିର୍ବୋଧ, ଦୁର୍ବୃତ୍ତ, ଚଣ୍ଡାଳ, ତୁ କାହିଁକି ଏପରି ପାଙ୍ଗରେ ଲାଗିଛୁ ? କାହିଁକି ସୁଖମୟ ଆଶ୍ରମର ସକଳ ସୁଖ ଶାନ୍ତି ଥରକୁ ଥର

ଭାଙ୍ଗୁଛୁ ? ବନବାସୀ ଋଷି ସନ୍ନ୍ୟାସୀମାନେ, ସିଦ୍ଧ ସାଧକମାନେ, ନିରୀହ ଜୀବଜନ୍ତୁ ଗୁଡ଼ିକ ତୋର କି ଅନିଷ୍ଟ କରୁଛନ୍ତି ? ଥରେ ଦୟା କରି ଛାଡ଼ି ଦେଇଥିଲି--ଆଉ ରକ୍ଷା ନାହିଁ ।" ଏହା କହି, ବଶିଷ୍ଠ ଯମଦଣ୍ଡ ପରି ଅଗ୍ନିମୟ ଭୀଷଣ ବ୍ରହ୍ମଦଣ୍ଡ ଧରି ବିଶ୍ୱାମିତ୍ରଙ୍କ ଆଗରେ ଆସି ଛିଡ଼ା ହୋଇ ଗଲେ । କହିଲେ, "ରେ କ୍ଷତ୍ରିୟ କୁଳାଙ୍ଗାର, ତୁ ବ୍ରହ୍ମ ବଳ ଠାରୁ କ୍ଷତ୍ରିୟ ବଳ ବଡ଼ ବୋଲି, ଅହଂକାର କରୁଛୁ— ଥରକର ପରାଜୟରେ ଶିକ୍ଷା ହେଲା ନାହିଁ ? ଅଚ୍ଛା, ମୁଁ ଏଇ ଛିଡ଼ା ହେଲି— ତୋର ଯେତେ ଶକ୍ତି, ସକଳ ପରାକ୍ରମ ପ୍ରୟୋଗ କରି ମୋତେ ଠେଲା ତ !"

ଏହା କହି, ନିଜ ବ୍ରହ୍ମଦଣ୍ଡଟି ଆଗରେ ଯୋଡ଼ି ଦେଇ ଧ୍ୟାନରେ ବୁଡ଼ି ରହିଲେ । ବିଶ୍ୱାମିତ୍ର ଏଥିରେ ଟିକିଏ ହେଲେ ଦବି ଗଲେ ନାହିଁ । ଦେଖୁ ଦେଖୁ, ଆଗ୍ନେୟାସ୍ତ୍ରରେ ଚତୁର୍ଦ୍ଦିଗ ପୋଡ଼ାଇ ପକାଇଲେ— ଭୀଷଣ ଅଗ୍ନି ବର୍ଷା ପରି ଶର ସବୁ ବର୍ଷିଗଲା-- ତଥାପି ବଶିଷ୍ଠ ଟଳିବାର ନୁହନ୍ତି । ଏହା ଦେଖି, ବିଶ୍ୱାମିତ୍ର ଆହୁରି ରାଗି ଗଲେ । ଆହୁରି ଭୀଷଣ ଭୀଷଣ ଅଗ୍ନିବାଣ— ବାରୁଣ, ଐନ୍ଦ୍ର, ପାଶୁପତ, ଐଷିକ, ମୋହନ, ଗାନ୍ଧର୍ବ, ସ୍ୱପନ, ଜୃମ୍ଭଣ, ସନ୍ତାପନ, ଶୋଷଣ, ବ୍ରହ୍ମ, ବ୍ରହ୍ମପାଶ, କାଳ-ପାଶ, ପିନାକ, ଦଣ୍ଡ, ପୈଶାଚ, ଧର୍ମଚକ୍ର, କାଳଚକ୍ର, ମୁଷଳ, ତ୍ରିଶୂଳ ଏହିପରି କେତେ କେତେ ରକମର ବାଣ ସବୁ ମାରି ଗଲେ । ଏ କାଣ୍ଡ ଦେଖି, ସ୍ୱର୍ଗରେ ଦେବତାମାନେ ଭୟରେ ଥର ହର ହେଲେ— ପୃଥିବୀ ଟଳମଳ ହୋଇ କମ୍ପି ଗଲା -- ତଥାପି ବଶିଷ୍ଠ ଟିକିଏ ହେଲେ ଟଳିଲେ ନାହିଁ । ସେଇ ଏକା ବ୍ରହ୍ମଦଣ୍ଡର ତେଜରେ ବିଶ୍ୱାମିତ୍ରଙ୍କର ସକଳ ଅସ୍ତ୍ର ଶସ୍ତ୍ର ମଉଳି ପଡ଼ିଲା । ଶେଷକୁ ରାଗି ଯାଇ, ବିଶ୍ୱାମିତ୍ର ବଶିଷ୍ଠଙ୍କୁ ଲକ୍ଷ୍ୟ କରି ବ୍ରହ୍ମାସ୍ତ୍ର ଛାଡ଼ିଲେ । ବ୍ରହ୍ମାସ୍ତ୍ରଠୁ ବଳି ଆଉ ଅସ୍ତ୍ର ନାହିଁ । ତାହା କେବେ ବ୍ୟର୍ଥ ହେବାର ନୁହେଁ । ଏ ଘଟଣା ଦେଖି, ଅଗ୍ନି, ସୂର୍ଯ୍ୟ, ଯମ, ବରୁଣ ଆଉ ଆଉ ଦେବତାମାନେ, ଦେବର୍ଷି, ଗନ୍ଧର୍ବ, କିନ୍ନର



ସକଳ ସ୍ୱର୍ଗବାସୀ ଅମରମାନେ ତାଟକା ହୋଇ ଚାହିଁ ରହିଲେ— ତ୍ରିଭୁବନ ଟଳମଳ ହେଲା— ତଥାପି ବଶିଷ୍ଠ ଟଳିଲେ ନାହିଁ । ଚାହୁଁ ଚାହୁଁ, ବଶିଷ୍ଠଙ୍କ ବ୍ରହ୍ମଦଣ୍ଡର ତେଜରେ ବ୍ରହ୍ମାସ୍ତ୍ର ମଧ୍ୟ ଭସ୍ମ ହୋଇଗଲା । ସେତିକି ବେଳକୁ ବଶିଷ୍ଠ ନିଆଁ ପରି ଜଳୁଛନ୍ତି— ପ୍ରତି ଲୋମ-କୂପର ମୂଳରୁ ଧୂଆଁ ବାହାରି ଯାଉଛି— ଆଉ ପ୍ରଚଣ୍ଡ ଅଗ୍ନିଶିଖା ସବୁ

ଦେହରୁ ବାହାରି ଚତୁର୍ଦ୍ଦିଗରେ ସତେ ଅବା ଏ ସୃଷ୍ଟି ପୋଡି ଭସ୍ମ କରିଦେବ ଜଣା ପଡ଼ୁଛି । ଏ ଦୃଶ୍ୟ ଦେଖି, ଋଷି, ସିଦ୍ଧ, ସାଧକ, ସନ୍ନ୍ୟାସୀ ବଶିଷ୍ଠଙ୍କ ଚତୁର୍ଦ୍ଦିଗରେ ଆସି ଜମା ହୋଇଗଲେ । ହାତ ଯୋଡ଼ି ବହୁତ ସ୍ତୁତି କରି କହିଲେ, "ହେ ବ୍ରହ୍ମନ୍ ! ଆଉ ଏ ମହା ତେଜ କାହିଁକି ? ନିବୃତ୍ତ କରନ୍ତୁ— ନୋହିଲେ ଏ ସୃଷ୍ଟି ଆଉ ରହିବ ନାହିଁ । ହେ ମହାତ୍ମନ୍, ବିଶ୍ୱାମିତ୍ରର ସକଳ ଗର୍ବ ଅହଂକାର ଚୂର୍ଣ୍ଣ ହେଲାଣି । ଆଉ କାହା ପାଇଁ ତେବେ ଏ ତେଜ ! ଶାନ୍ତ ହୁଅନ୍ତୁ— ଆପଣ ଶାନ୍ତ ନ ହେଲେ, ଏ ସୃଷ୍ଟି ଶେଷ ହେବାକୁ ବସିଲା ।"

ଋଷିମାନଙ୍କ ପ୍ରାର୍ଥନାରେ ବଶିଷ୍ଠ ଶାନ୍ତ ହେଲେ— ସେ ବ୍ରହ୍ମ-ତେଜ ମଉଳି ପଡ଼ିଲା । ଧୀରେ ଧୀରେ ପୁଣି ସେହି ମଧୁର ସୁନ୍ଦର କମନୀୟ କାନ୍ତି ବଶିଷ୍ଠଙ୍କ ଦେହକୁ ଫେରି ଆସିଲା । ବିଶ୍ୱାମିତ୍ର ବଞ୍ଚିଗଲେ । ବଞ୍ଚି-ଗଲେ ସତ, ସେ ପରାଭବ, ସେ ଅପମାନ କି ଭୁଲିବାର କଥା ! ଦୀର୍ଘ ନିଶ୍ୱାସ ପକାଇ ପକାଇ ପ୍ରତିଜ୍ଞା କଲେ, "କ୍ଷତ୍ରିୟ କୁଳକୁ ଧିକ୍— ଧିକ୍ ଏ ସମ୍ରାଟ ଆସନକୁ ! ! ସୃଷ୍ଟିର ସମସ୍ତ ସମ୍ପଦ ବ୍ରାହ୍ମଣର ପଦରେଣୁକୁ ମଧ୍ୟ ସମାନ ନୁହେଁ । ତେବେ, ଆଉ ସମ୍ରାଟ୍ ହୋଇ କି କାର୍ଯ୍ୟ ! ମୁଁ ବ୍ରାହ୍ମଣ ହେବି । ଆଜ ଠାରୁ ଏ କ୍ଷତ୍ରିୟ ଧର୍ମ ଛାଡ଼ିଲି— ଆଉ, ଜୀବନରେ ଯଦି ବ୍ରାହ୍ମଣ ନ ହୁଏ, ତେବେ ଏ ହୀନ, ଅପମାନିତ ଜୀବନ ମଧ୍ୟ ଛାଡି ଦେବି ।



## ଘୋର ତପସ୍ୟା

ବିଶ୍ୱାମିତ୍ର ଅପମାନରେ ବୁଡ଼ି ଗଲେ । ଦିନ ରାତି ପେଟରେ ନିଆଁ ଜଳିଲା । କ'ଣ କଲେ ବ୍ରାହ୍ମଣ ହେବେ— ଶକ୍ତିରେ, ତେଜରେ ବଶିଷ୍ଠଙ୍କର ସମାନ ହେବେ — ଅନ୍ତରର ନିଆଁ ଜଳିବ, ସଦା ସର୍ବଦା

ସେଇ ଭାବନା । ରାଜଗାଦି, ସମସ୍ତ ଭୋଗବିଳାସ ତ ଛାଡ଼ିଥିଲେ, ଏବେ ସାରା ସଂସାର ବିଷ ବୋଧହେଲା । ଦକ୍ଷିଣ ଦେଶର ଘୋର ବନସ୍ତକୁ ଚାଲି ଯାଇ ତପସ୍ୟା କରି ବସିଲେ । ଦିନେ ନୁହେଁ, ମାସେ ନୁହେଁ, ସହସ୍ର ବର୍ଷ କାଳ ଯୋଗାସନରେ କଟାଇ ଦେଲେ । ସ୍ୱର୍ଗର ଦେବତାମାନେ ଧନ୍ୟ ଧନ୍ୟ କଲେ । ନିଜେ ବ୍ରହ୍ମା ମଧ୍ୟ ସେ ତପସ୍ୟା ଦେଖି କାବା ହୋଇଗଲେ । ନିକଟକୁ ଆସି କହିଲେ, "ଧନ୍ୟ ବିଶ୍ୱାମିତ୍ର, ଏପରି ତପସ୍ୟା ଦେଖା ନ ଥିଲା— ତୁମେ ଆଜି ଠାରୁ ରାଜର୍ଷି ହେଲ ।"

ବ୍ରହ୍ମା ଚାଲିଗଲେ; କିନ୍ତୁ ତାଙ୍କର କଥାରେ ବିଶ୍ୱାମିତ୍ରଙ୍କ ମୁହଁ ଶୁଖିଗଲା— ମୁଣ୍ଡ ତଳକୁ ପଡ଼ିଗଲା । ଦୁଃଖ ହୃଦୟରେ ଭାବିଲେ, "ଏଁ, ହେଇ ହେଇ ଏବେ ଏଇ ରାଜର୍ଷି ହେଲି ! ଏଡ଼େ କଠିନ ତପସ୍ୟାର ତେବେ ଏଇ ଫଳ ! ବ୍ରାହ୍ମଣମାନେ, ସ୍ୱର୍ଗର ଦେବତାମାନେ ମୋତେ ଆଜି ଉପହାସ କରୁଥିବେ । ଆଉ ଏ ପ୍ରାଣ ଥିଲେ କେତେ, ଗଲେ କେତେ !" ଏହିପରି ଭାବି, ତପସ୍ୟା ସରୁ ସରୁ ପୁଣି ଆହୁରି କଠିନ ତପସ୍ୟା ଆରମ୍ଭ କରିଦେଲେ ।



## ତ୍ରିଶଙ୍କୁ

ଠିକ୍ ଏହି ସମୟକୁ ହରିଶ୍ଚନ୍ଦ୍ରଙ୍କ ବାପା ତ୍ରିଶଙ୍କୁ ଅଯୋଧ୍ୟାରେ ରାଜା ହୋଇଥିଲେ । ସେ ଯେପରି ସତ୍ୟବାଦୀ ସେହିପରି ଧାର୍ମିକ । ତାଙ୍କ ସୁଗୁଣରେ ସ୍ୱର୍ଗର ଦେବତାମାନେ, ସଂସାରର ସକଳ ପ୍ରାଣୀ ବଡ଼ ପରିତୁଷ୍ଟ ହୋଇଥିଲେ । ତାଙ୍କର ଭାରି ଇଚ୍ଛା ଥିଲା— ଏପରି ଏକ ଯାଗ କରନ୍ତେ ଯେ, ଯେପରି ତାର ଫଳରେ ନିଜଦେହ ଧରି ସ୍ୱର୍ଗକୁ ଚାଲି ଯାଆନ୍ତେ ! ଦିନେ ତାଙ୍କର ସେଇ ଇଚ୍ଛା କୁଳଗୁରୁ ବଶିଷ୍ଠଙ୍କ

ଅଂଟୋ ଯାଇଁ ଜଣାଇଲେ । ବଶିଷ୍ଠ ତ୍ରିକାଳଦର୍ଶୀ— ଅଗତ ଅନାଗତ କଥା ସବୁ ତାଙ୍କୁ ଜଣା । ଯୋଗ ବଳରେ ଜାଣି ପାରିଲେ, ତ୍ରିଶଙ୍କୁ ଅଗ୍ରୀତ ଜୀବନରେ ମହା ମହା ପାପମାନ କରିଛନ୍ତି— ଏପରି ପାପୀ ଲୋକ ଗୋଟେ ଜୀବନରେ ସ୍ୱର୍ଗକୁ ଯିବା ଠିକ୍ ନୁହେ । ବଶିଷ୍ଠ ସେ ଯାଗ ସମ୍ପନ୍ନ କରି ପାରି ଥାଆନ୍ତେ; କିନ୍ତୁ ଅନ୍ୟାଯ୍ୟ ଭୟରେ ନିବର୍ତ୍ତି ଗଲେ । କହିଲେ, "ମହାରାଜ, ସେ ଇଚ୍ଛା ଛାଡ଼— ସେପରି ଯାଗ ମୁ ନିଜେ କରି ପାରିବି ନାହିଁ ।"

ଦକ୍ଷିଣ ଦେଶର ଅଉ ଗୋଟିଏ ବନସ୍ତରେ ବଶିଷ୍ଠଙ୍କର ଶହେ ପୁଅ ତପସ୍ୟା କରୁଥିଲେ । ତପସ୍ୟା କରି କରି ଜଳନ୍ତା ନିଆଁ ପରି ସେମାନଙ୍କର ତେଜ ସ୍ପଷ୍ଟ ଦିଶୁଥିଲା । ବଶିଷ୍ଠ ନାହିଁ କରିବାରୁ ତ୍ରିଶଙ୍କୁ ଏହି ଗୁରୁପୁତ୍ରମାନଙ୍କ ପାଖକୁ ଆସିଲେ । ଭାବିଲେ, ସେମାନେ ଅବା ହଁ କରିବେ । ଆସି କହିଲେ, "ଆପଣମାନେ ମୋର ଗୁରୁପୁତ୍ର— ଗୁରୁ ଯେତେବେଳେ ପରିତ୍ୟାଗ କଲେ, ଆପଣମାନେହିଁ ମୋର ଭରସା । ପିତା ଓ ପୁତ୍ର ମଧ୍ୟରେ ସେପରି କିଛି ଭେଦ ନାହିଁ ବୋଲି, ଧର୍ମଶାସ୍ତ୍ର କହୁଚି । ତେବେ ଆପଣମାନେ ମୋର ଏଇ ଯାଗ କର— ତାହାରି ବଳରେ ମୁଁ ଏ ଦେହ ଧରି ସ୍ୱର୍ଗକୁ ଯାଏ ।"

"ମହାରାଜ, ତୁମର ଏପରି ମନ୍ଦ ବୁଦ୍ଧି ହେଲା କିପରି ? କିପରି ନିଜର କୁଳଗୁରୁଙ୍କୁ ଛାଡ଼ି, ଅନ୍ୟ ଗୁରୁ ଖୋଜି ଆସିଛ ! ଜାଣ ନାହିଁ— ବଶିଷ୍ଠ ବ୍ରହ୍ମାଙ୍କ ପୁଅ ? ସେ କିଏ ରଖିଲେ କିଏ କରି ନ ପାରନ୍ତି ? ସେ ନାହିଁ କଲେ, ସାରା ସୃଷ୍ଟିରେ କିଏ ଅଛି ପୁଣି ହଁ କରିପାରେ ? ସେ ଯେତେବେଳେ ଅସମ୍ଭବ ବୋଲି ନାହିଁ କରି ସାରିଲେଣି, ଆମେ ଯାଗ କରିବାକୁ ଯାଇ ତାଙ୍କୁ କିଏ ଅପମାନ ଦେବୁ— ପିତାଙ୍କ ପବିତ୍ର ନାମରେ କଳଙ୍କ ବୋଳିବୁ ? ଆଉ ଦେଖୁଚ— ତୁମେ ବୟସରେ ବଡ଼, ଭାଗ୍ୟ ବଳରେ ଏଡ଼େ ବଡ଼ ମୁଲକର ରାଜା ହୋଇ ବସିଛ ସତ;

କିନ୍ତୁ ତୁମଠାରେ ସେତିକି ଠାର ବୁଦ୍ଧି ନାହିଁ । ହଇ ହେ, କିଏ କେବେ ଏ ନର ଦେହ ଧରି ସ୍ୱର୍ଗକୁ ଯାଇଛି ! ହଉ, ଏବେ ଆମ କଥା ଶୁଣ— ଘରକୁ ଯାଅ; ଆଉ ଏ ପାଗଳାମି ଛାଡ଼ି ଶାନ୍ତ ହୋଇ ବସି ରହ ।"

ଅଭାଗା ତ୍ରିଶଙ୍କୁ ଗୁରୁପୁତ୍ରଙ୍କ କଥାରେ ବୁଝିଲେ ନାହିଁ । ବରଂ ରାଗି ହୋଇ କହିଲେ, "ମୋର ପ୍ରାର୍ଥନା ଗୁରୁ ଶୁଣିଲେ ନାହିଁ, କି ଗୁରୁପୁତ୍ର-ମାନେ ଶୁଣିଲ ନାହିଁ— ମୁଁ ବାଧ୍ୟ ହୋଇ, ଅନ୍ୟ ଗୁରୁ ଖୋଜିବାକୁ ଯିବି— ସେଥିରେ ହତାଶ ହେବି ନାହିଁ ।" ଏ କଥା ଶୁଣି ମୁନିପୁତ୍ର-ମାନେ ଚାଟିଗଲେ । କହିଲେ, "ରେ ନିର୍ବୋଧ, ତୁ ନିଜ କୁଳଗୁରୁ ଛାଡ଼ି, ଅନ୍ୟ ଗୁରୁ ଖୋଜିବାକୁ ଯିବୁ— ଏଡ଼େ ଅହଂକାର ! ତୁ ଇକ୍ଷ୍ୱାକୁ ବଂଶର କଳଙ୍କ । ତୋର ଏ ରାଜ ଦେହରେ ଚଣ୍ଡାଳର ହୃଦୟ ରହିଅଛି । ସେଥି ପାଇଁ ତୁ ଏଇ କ୍ଷଣି ନ ପାରିଣ୍ଡ ଚଣ୍ଡାଳ ହୁଅ ।"

ସତକୁ ସତ, ଆର ଦିନ ବଡ଼ି ସକାଳୁ ତ୍ରିଶଙ୍କୁଙ୍କ ରୂପ, ବେଶ ଠିକ୍ ଚଣ୍ଡାଳ ପରି ହୋଇଗଲା । କଳାଅଟ ଦେହ, ଝାଙ୍ଗିଶିଆ ଝାଙ୍ଗିଶିଆ ବାଳ, ସର୍ବାଙ୍ଗ ଯାକ ମୁର୍ଦାର ପାଉଁଶ ବୋଳା— ହାତରେ ଲୁହାର କଙ୍କଣ— ପିନ୍ଧା ଛିଣ୍ଡା ମଇଳା ଲୁଗା ! ଏ ବେଶ ଦେଖି ଯମଦୂତ ଦୂର୍ ଦୂର୍ ମାର୍ ମାର୍ କଲେ । ପ୍ରାଣର ପୁତ୍ର କନ୍ୟା ସ୍ନେହୀ ସ୍ୱଜନ-ମାନେ, ପ୍ରିୟ ମନ୍ତ୍ରିଗଣ ମଧ୍ୟ ଛାଡ଼ି ପଳାଇଲେ ! ତ୍ରିଶଙ୍କୁ ଏବେ କରନ୍ତୁ କଣ !

ଘରଦ୍ୱାର, ସୁଖ ସମ୍ପଦ ସକଳ ଛାଡ଼ି, ଏବେ ତ୍ରିଶଙ୍କୁ ଦେହ ଦେହ ହୋଇ, ବାର ଦ୍ୱାର ଶୁଙ୍ଘି ପିଣ୍ଡା ବୁଲିଲେ । ଏ ସୃଷ୍ଟି କ୍ଷଣ କ୍ଷଣକୁ ଅଜା । ଭାଗ୍ୟର ନିର୍ଦେଶରେ କ୍ଷଣକେ ରାଜାଧିରାଜଙ୍କୁ ବାଟଚଲା ପରି ବୁଲିବାକୁ ପଡ଼ିଲା । ଦୁଃଖରେ, ଅନୁତାପରେ ସୁସ୍ଥ ସବଳ ମୂର୍ତ୍ତି ହାଡ଼ କୁଢ଼ ହୋଇଗଲା । ବୁଲୁ ବୁଲୁ ଶେଷକୁ ଭାଗ୍ୟ ବଳରେ ତ୍ରିଶଙ୍କୁ,

ବିଶ୍ୱାମିତ୍ରଙ୍କ ପାଖେ ଆସି ପହଞ୍ଚିଲେ । ତ୍ରିଶଙ୍କୁ ପରି ଏଡ଼େ ବଡ଼ ଧାର୍ମିକ ରାଜା, ତାର ପୁଣି ଏପରି ଅବସ୍ଥା— ଏ ଚଣ୍ଡାଳ ବେଶ ! ବିଶ୍ୱାମିତ୍ର ଦେଖି ତରଳ ଗଲେ । ଅତି ବ୍ୟାକୁଳ ହୋଇ ପଚାରିଲେ, "ବାବା ତତେ ଏ ଦଶା କିଏ ଦେଲା ? କାହା ଯୋଗୁଁ ତୋର ଏ ଦୁଃଖ, ଏ ପରିବର୍ତ୍ତନ, ଏପରି ଅବସ୍ଥା ?" ଏତେ ଦିନ ପରେ ଯଦ୍ଦେ ସହାନୁଭୂତିର କଥା ପାଇ, ତ୍ରିଶଙ୍କୁଙ୍କ ଦୁଇ ଆଖିରୁ ଧାର ଧାର ଲୁହ ବହିପଡ଼ିଲା । କାନ୍ଦି କାନ୍ଦି ସକଳ କଥା ଜଣାଇଲେ । କିପରି ସେ ଯାଗ ପାଇଁ ଅନୁରୋଧ କରିବାକୁ ଗୁରୁ ବଶିଷ୍ଠଙ୍କ ପାଖକୁ ଯାଇଥିଲେ, ସେ ନାସ୍ତି କରିବାରୁ କିପରି ତାଙ୍କ ପୁଅମାନଙ୍କୁ ଯାଇ ଅନୁରୋଧ କଲେ, ଆଉ କିପରି ଶେଷରେ ଗୁରୁପୁତ୍ରମାନଙ୍କର ନିଷ୍ଠୁର ଅଭିଶାପରେ ତାଙ୍କର ଏ ଦଶା ହେଲା, ସବୁ ବର୍ଣ୍ଣନା କରିଗଲେ । ସବୁ ଶେଷକୁ କହିଲେ, "ହେ ରାଜର୍ଷି, ମୁଁ ଜୀବନରେ କେବେ ମିଛ କହିନାହିଁ— ଅଧର୍ମ, ଅନ୍ୟାୟର ଧାର ଧରି ନାହିଁ । ପ୍ରଜାମାନଙ୍କୁ ପୁଅ ପରି ପାଳି ଆସିଛି— କାହାର ମଙ୍ଗଳ ଛଡ଼ା, ଅମଙ୍ଗଳ ଚିନ୍ତା କରିନାହିଁ— ତଥାପି ମୋର ଏ ଦୁର୍ଦ୍ଦଶା ! ଦେଖୁଛି, ଭାଗ୍ୟହିଁ ସବୁଠାରୁ ବଡ଼— ଯାହା ବିଧି ଲେଖିଛି କେବେ ହେଲେ ଲିଭିବ ନାହିଁ । ତେବେ ସେଇ ଭାଗ୍ୟ ମଧ୍ୟ ଶେଷରେ ମୋତେ ଆପଣଙ୍କ ଚରଣ ନିକଟକୁ ଆଣିଛି । ଆପଣ ଦୟାର ପ୍ରତିମୂର୍ତ୍ତି । ପୁଣି ଆପଣଙ୍କ ଶକ୍ତି ସାମର୍ଥ୍ୟର ଅସମ୍ଭବ କିଛି ନାହିଁ । ମୋର ବିଶ୍ୱାସ— ଆପଣଙ୍କର ଅନୁଗ୍ରହ ହେଉଛି, ବିଧିଲିପି ମଧ୍ୟ ଲିଭି ଯାଇ ପାରେ ।"

ତ୍ରିଶଙ୍କୁଙ୍କ ଅବସ୍ଥା ଦେଖି, କରୁଣ କଥା ଶୁଣି, ବିଶ୍ୱାମିତ୍ରଙ୍କର ଲୁହ ବହି ପଡ଼ିଲା । କହିଲେ, "ବାବା, ମୁଁ ତୋତେ ବଡ଼ ଧାର୍ମିକ ବୋଲି ଜାଣିଛି— ଆଉ କହିବା ଦରକାର ନାହିଁ । ଆଜି ଠାରୁ ମୁଁ ତୋର ସାହା ହେବି— ଆଉ କିଛି ଚିନ୍ତା କରନା । ମୁଁ ତୋର ଯଜ୍ଞ

ପାଇଁ ନିଜେ ଆୟୋଜନ କରିବ, ନିଜେ ସକଳ ଋଷି ବ୍ରାହ୍ମଣମାନଙ୍କୁ ଆମନ୍ତ୍ରଣ କରି ଆଣିବ— ତୋତେ ନେଇ ଅଗ୍ନିଷ୍ଟୋମ ଯଜ୍ଞ ସାଧନ କରାଇବ । ଗୁରୁପୁତ୍ରମାନଙ୍କ ଅଭିଶାପରେ ଅପବିତ୍ର, ଏପରି ବିରୂପ ହୋଇଛୁ ବୋଲି, ଭାବନା କରନା । ତୁ ଏହି ଚଣ୍ଡାଳ ଦେହରେ ସ୍ୱର୍ଗରେ ଯାଇଁ ବସିବୁ । ତୁ ବିଶ୍ୱାମିତ୍ର ପାଖେ ଯେତେବେଳେ ଶରଣ ପଶିଛୁ ସ୍ୱର୍ଗ ତୋର ହାତ ମୁଠାରେ ।"

କେବଳ ଏହି ଆଶାସନା ଦେଇ ରାଜର୍ଷି ନିଶ୍ଚିନ୍ତ ହେଲେ ନାହିଁ । ସେହି ମୁହୂର୍ତ୍ତରେ ନିଜର ପୁଅମାନଙ୍କୁ, ନିକଟରେ ଥିବା ଶିଷ୍ୟମାନଙ୍କୁ ଡାକି ଆଦେଶ ଦେଲେ, "ତୁମେମାନେ ଶୀଘ୍ର ଯାଇ, ବଶିଷ୍ଠଙ୍କୁ, ତାଙ୍କ ପୁଅ ଓ ଆଉ ଆଉ ଋଷିମାନଙ୍କୁ ନିମନ୍ତ୍ରଣ କରି ଆସ । ଋତ୍ୱିକ୍‌ଗଣଙ୍କୁ ଆସିବାକୁ କହ । ଯଦି କେହି ଅସ୍ୱୀକାର କରେ, କୌଣସି ଅପମାନ ଦିଏ, ମୋତେ ଆସି ଜଣାଅ ।" ଆଜ୍ଞା ପ୍ରମାଣେ ଶିଷ୍ୟମାନେ ଚାରିଆଡ଼େ ଦେଖି ଗଲେ । ଆମନ୍ତ୍ରଣ ପାଇ, ନାନା ଦେଶରୁ ବ୍ରାହ୍ମଣ, ଋଷି ସନ୍ନ୍ୟାସିମାନେ ଆସିବାକୁ ଲାଗିଲେ । ଆଗରୁ ଶିଷ୍ୟମାନେ ଫେରି ଆସି ବିଶ୍ୱାମିତ୍ରଙ୍କୁ ଜଣାଇଲେ, "ଆପଣଙ୍କର ନାଁ ଶୁଣି, ସବୁଠି ଋଷି ବ୍ରାହ୍ମଣମାନେ ଆସିବାକୁ ପ୍ରସ୍ତୁତ ହେଲେ, କିନ୍ତୁ ମହୋଦୟ ନାମରେ ଜଣେ ବ୍ରାହ୍ମଣ, ଆଉ ବଶିଷ୍ଠଙ୍କ ପୁଅମାନେ ସମସ୍ତେ ଯାଗ କଥା ଶୁଣି ଠୋ ଠୋ ହସି ଉଠିଲେ । ବିଦ୍ରୂପ କରି କହିଲେ, "ବାଃ ବା, ବେଶ୍ ଯାଗ— କ୍ଷତ୍ରିୟ ଯାଜକଙ୍କୁ ଯଜ୍ଞକର୍ତ୍ତା ଚଣ୍ଡାଳ ! ଦେବତାମାନେ ତ ସେ ଯଜ୍ଞଭାଗ ଖାଇ ପବିତ୍ର ହୋଇଯିବେ ! ଆଉ ସେଥିରେ ସ୍ୱର୍ଗକୁ ସୁବର୍ଣ୍ଣ ନିଶୁଣୀ ପଡ଼ିଯିବ ଯେ, ଚଣ୍ଡାଳ ଝପ୍ ଝପ୍ ଉଠି ଯାଇ ସ୍ୱର୍ଗରେ ରଜା ହୋଇ ବସିପଡ଼ିବ ! — ହେ ମୁନିବର, ତାଙ୍କର ଏ ଅହଂକାର ସହି ହେଉନାହିଁ ।"

କଥା ଶୁଣି ଶୁଣି ବିଶ୍ୱାମିତ୍ର କ୍ରୋଧରେ ଅଧୀର ହୋଇ କହିଲେ,

"ମୁଁ କଠୋର ତପସ୍ୟାରେ ଲାଗିଛି, ପାପକୁ କେବେ ଗୋଡ଼ ଦେଇ ନାହିଁ; ମୋ ପରି ପ୍ରାଣୀ ପ୍ରତି ଏ ଅପମାନ— ଏପରି ଘୃଣା ! ସ୍ପର୍ଦ୍ଧା ସହୁଛି କପରି ! ବଶିଷ୍ଠଙ୍କ ପୁତ୍ରମାନେ ଭସ୍ମ ହୁଅନ୍ତୁ— ସାତଶ ଜନ୍ମ ପର୍ଯ୍ୟନ୍ତ ଶବର ହୋଇ ଶବ ଓ କୁକ୍କୁର ମାଂସ ଭୋଜନ କରି, ବୁଲନ୍ତୁ । ଆଉ ସେହି ମହୋଦୟ ବ୍ରାହ୍ମଣ ! ଶ୍ରେଷ୍ଠ ଲୋକର ବଡ଼ କଥା ! ସେ ଏହି ଅନ୍ୟାୟ ଯୋଗୁଁ ଅନନ୍ତକାଳ ଚଣ୍ଡାଳ ଜନ୍ମ ପାଉ— ଜୀବହିଂସା, କଦାଚାରରେ ଅଶେଷ ଦୁର୍ଗତି ଭୋଗ କରୁ ।"



## ବିଚିତ୍ର ସୃଷ୍ଟି

ଯଜ୍ଞ ଆରମ୍ଭ ହେଲା । ନିଜେ ବିଶ୍ୱାମିତ୍ର ଯାଜକ ହୋଇ ବସିଲେ । ବିଶ୍ୱାମିତ୍ର ରାଜର୍ଷି— ଇଚ୍ଛା କଲେ ସବୁ କରି ପାରନ୍ତି । ତାଙ୍କ ଆଜ୍ଞା ଅବଜ୍ଞା କରିବ କିଏ ? ଆମନ୍ତ୍ରିତ ଋଷି ବ୍ରାହ୍ମଣମାନେ ଆଜ୍ଞା ପାଇ, ଯିଏ ଯାହା କାମରେ ଲାଗିଗଲେ । ଏ ଯଜ୍ଞର ଫଳରେ— ତ୍ରିଶଙ୍କୁ ନରଦେହ ଧରି ସ୍ୱର୍ଗକୁ ଯିବାର କଥା । ଏତେ ବଡ଼ କଥା ପାଇଁ ଯଜ୍ଞରେ ଯାହା ହେବା ଦରକାର, ସମସ୍ତ ଯଥା ବିଧି କରି ଗଲା । ବିଶ୍ୱାମିତ୍ର ମନ୍ତ୍ର ଉଚ୍ଚାରଣ କରି, ଦେବତାମାନଙ୍କୁ ଜଣ ଜଣ କରି ଡାକିଲେ । କିନ୍ତୁ ଚଣ୍ଡାଳ ହାତରୁ ଯଜ୍ଞଭାଗ ଗ୍ରହଣ କରିବାକୁ କେହି ଆସିଲେ ନାହିଁ । ଥରେ, ଦୁଇ ଥର, ବାରମ୍ବାର ବଡ଼ ପାଟି କରି ଡାକିଲେ— ଦେବତାମାନେ ଶୁଣିଲେ ନାହିଁ । ଅଗ୍ନିରେ ଆହୁତି ପଡ଼ିଗଲା— ବିଶ୍ୱାମିତ୍ରଙ୍କ ଅନ୍ତରର ଅଗ୍ନି ଏଥିରେ ପ୍ରଜ୍ୱଳିତ ହୋଇ ଉଠିଲା । କ୍ରୋଧରେ ସ୍ୱର୍ଗ ଆଡ଼କୁ ସ୍ରୁବ ଦେଖାଇ କହିଲେ, "ହଁ, ଯଜ୍ଞ ନ ହେଲା ତ ନୋହୁ । ଯାଅ ତ୍ରିଶଙ୍କୁ— ଯାଅ ନରନାଥ, ମୋର

ତପସ୍ୟାର ଫଳ ନେଇ ସ୍ୱର୍ଗକୁ ଚାଲି ଯାଅ— ଆଉ ଅପେକ୍ଷା କାହିଁକି ? ବିଶ୍ୱାମିତ୍ର ଯାହା କହେ, ତା କରିବାଇ କରିବ । ”

ଆଶ୍ଚର୍ଯ୍ୟର କଥା, ସମସ୍ତେ ଚାରିଆଡେ ଥକ୍କା ହୋଇ ଚାହିଁ ରହିଛନ୍ତି, ସ୍ୱର୍ଗ ଯେଉଁ ଆଡକୁ ଠେକା ହୋଇଥିଲା; ତ୍ରିଶଙ୍କୁ ସେଇ ଚଣ୍ଡାଳ ଦେହରେ ସେଇ ସ୍ୱର୍ଗ ଆଡକୁ ଉଠିବାକୁ ଲାଗିଲେ ! ଏ ଦୃଶ୍ୟ ଦେଖି, ଇନ୍ଦ୍ରାଦି ଦେବତାମାନଙ୍କ ମଧ୍ୟରେ ଆତଙ୍କ ପଡିଗଲା । “ସ୍ୱର୍ଗକୁ ଚଣ୍ଡାଳ ଆସିବ, ପବିତ୍ର ସ୍ୱର୍ଗଧାମ କଳଙ୍କିତ ହେବ ! କଣ କରିବା— କଣ ହେବ ? ” ଏହି ଭାବନାରେ ସମସ୍ତେ ଅଥୟ ହେଲେ । ସମସ୍ତେ ଏକ ମେଳ ହୋଇ ଡାକ ଛାଡ଼ିଲେ; “ ନା ରାଜା ! ତା ହେବ ନାହିଁ— ତୁମେ ପୁଣି ମର୍ତ୍ତ୍ୟ ଭୁବନକୁ ଯାଅ । ତୁମ ମୁଣ୍ଡରେ ଗୁରୁ ବଶିଷ୍ଠଙ୍କର ଅଭିଶାପ ରହିଅଛି— ତୁମେ ସ୍ୱର୍ଗରେ କଦାପି ରହି ପାରିବ ନାହିଁ ।

ଦେବତାମାନଙ୍କର କଥା ଅନ୍ୟଥା ହେବାର ନୁହେଁ । ସତକୁ ସତ, ତ୍ରିଶଙ୍କୁ ସ୍ୱର୍ଗରୁ ତଳକୁ ଖସି ପଡ଼ିଲେ । ଓଃ ସେ କି ଦୁଃସ୍ୱପ୍ନର ! କାହିଁ ସ୍ୱର୍ଗ, କାହିଁ ଭୂମଣ୍ଡଳ ! ଏତେ ଉପରୁ ପୁଣି ଏତେ ତଳକୁ ଲୋକ ପଡ଼େ ! ସେ କି କଷ୍ଟ, କିଏ ବୁଝିବ ? ଉପରମୁହାଁ ଲୋକ କିଛି ଦେଖେ ନାହିଁ; କିଛି ବୁଝେ ନାହିଁ । ତ୍ରିଶଙ୍କୁ ଉଠିଲା ବେଳେ ତଳ ଦେଖୁ ନ ଥିଲେ । ବର୍ତ୍ତମାନ ଜୀବନର ଅତି ତଳ ପର୍ଯ୍ୟନ୍ତ ସକଳ ପାପ ଦିଶିଗଲା । ପାପର କି ଦଣ୍ଡ, କି ଅନୁତାପ— ଗୁରୁବାକ୍ୟ ଲଙ୍ଘନର କି ପରିଣାମ, ତ୍ରିଶଙ୍କୁ ଅଙ୍ଗେ ଲଭିଲେ । ବେଦନାରେ ଅଥୟ ହୋଇ ବିଶ୍ୱାମିତ୍ରଙ୍କୁ ‘ତ୍ରାହି ତ୍ରାହି’ ଡାକ ଛାଡ଼ିଲେ ।

ଯଜ୍ଞଶାଳାରୁ ବିଶ୍ୱାମିତ୍ର ଦେଖିଲେ— ତ୍ରିଶଙ୍କୁ ସ୍ୱର୍ଗରୁ ଖସି ପଡୁଛନ୍ତି । ସେ ‘ତ୍ରାହି ତ୍ରାହି’ କରୁଣ ଡାକ ଚଡ଼ଚଡ଼ ପରି କାନରେ ବାଜିଲା । କ୍ରୋଧରେ ଅସ୍ଥିର ହୋଇ କହିଲେ, “ହେ ବତ୍ସ ତ୍ରିଶଙ୍କୁ, ସେଠାରେ ରହ— ମୁଁ ତୁମ ପାଇଁ ନୂତନ ସ୍ୱର୍ଗ ସୃଷ୍ଟି କରୁଛି । ”



ଇଚ୍ଛା ମାତ୍ରକେ ସେହିକ୍ଷଣି ନୂତନ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ଉପଗ୍ରହ, ତାରକା, ଧୂମକେତୁ ସୃଷ୍ଟି ହୋଇଗଲା ! ପୁଣି ନୂତନ ସ୍ୱର୍ଗ, ନୂତନ ଦେବତା, ନୂତନ ଇନ୍ଦ୍ର ଗଢିବାକୁ ବସିଲେ ! ସକଳ ସୃଷ୍ଟି ପୁଣି ଥରେ ନୂଆ ହୋଇ ଦେବ— ଏ ଅନ୍ୟାୟ, ଏ ପକ୍ଷପାତ, ଏ ବ୍ରାହ୍ମଣ ଚଣ୍ଡାଳ ଭେଦ ରହିବ ନାହିଁ — ଏଇ ପ୍ରତିଜ୍ଞା ! ଇନ୍ଦ୍ରାଦି ଦେବତାମାନେ, ଗନ୍ଧର୍ବ, କିନ୍ନର, ଋଷି, ଦିବ୍ୟପୁରୁଷମାନେ ଚାଟକା ହୋଇ ରହିଁ

ରହିଛନ୍ତି— ସମସ୍ତଙ୍କର ଆଖି ଆଗରେ ନୂତନ ବିଚିତ୍ର ସୃଷ୍ଟି ବିକଶି ଉଠିଲା ! ଦେଖୁ ଦେଖୁ ସତେ ସୃଷ୍ଟି ଓଲଟିଯିବ ! ଭୟରେ ଅଧୀର ହୋଇ ସମସ୍ତେ ଆସି ବିଶ୍ୱାମିତ୍ରଙ୍କ ପାଖରେ ପହଞ୍ଚିଲେ-- ବହୁତ ଅନୁନୟ ବିନୟ କରି କହିଲେ, "ତପୋଧନ, ଏ ତ୍ରିଶଙ୍କୁର ମସ୍ତକରେ ଗୁରୁଙ୍କର ଭୀଷଣ ଅଭିଶାପ— ଘୋର ପାପର ବୋଝ ରହିଛି— ସେ କିପରି ସ୍ୱର୍ଗକୁ ଯିବ ? ଅପଣ ବୃଥା ନାହାନ୍ତି କାହିଁକି ? ସୃଷ୍ଟିରୁ ବଡ଼ ସାନ ଭେଦ ଉଠିଗଲେ କ'ଣ ଭଲ ହେବ ? ଆପଣ ଆଉ ତ୍ରିଶଙ୍କୁ କଣ ସମାନ ହୋଇପାରେ— ତେବେ ଆଉ ଏ ନୂତନ ସୃଷ୍ଟି କାହିଁକି ? ବନ୍ଦ କରନ୍ତୁ ।"

"ତେବେ, ମୁଁ ଯେ ପ୍ରତିଜ୍ଞା କରିଛି, ତ୍ରିଶଙ୍କୁକୁ ସ୍ୱର୍ଗକୁ ପଠାଇବି, ତା କଣ ଅନ୍ୟଥା ହେବ ? ନା, ତ୍ରିଶଙ୍କୁ ସେହି ଗୃହସ୍ଥାଳୀ ଦେହରେ ଚିରକାଳ ସ୍ୱର୍ଗରେ ସେହିପରି ରହିଥାଉ— ଚିରକାଳ ମୋର ଏ ସୃଷ୍ଟି ଏହିପରି ଜାଗ୍ରତ ରହୁ ।" ଏ କଥା ଶୁଣି ଦେବତାମାନେ କହିଲେ, "ହଉ, ଆପଣଙ୍କ କଥା ରହୁ ବିଚିତ୍ରକର୍ମୀ, ତୁମର ସୃଷ୍ଟି ଏହି ସୂର୍ଯ୍ୟ ଚନ୍ଦ୍ର ନକ୍ଷତ୍ରଗଣ ସେହିପରି ସୌର ମଣ୍ଡଳର ଆର ପାଖେ ଚିର ଦିନ ରହିଥାନ୍ତୁ— ସେହିପରି ତଳକୁ ମୁହଁ କରି, ଦେବତାମାନଙ୍କ ପରି ତ୍ରିଶଙ୍କୁ ଚିରଦିନ ଅମର ହୋଇ ରହିଥାଉ । ତ୍ରିଶଙ୍କୁ କୃତାର୍ଥ, କୀର୍ତ୍ତିମାନ୍, ଧନ୍ୟ ହେଉ— ଆଉ ତୁମର ଏ କୀର୍ତ୍ତି ଯୁଗେ ଯୁଗେ ଥାଉ ।" ବିଶ୍ୱାମିତ୍ର ଦେବତାମାନଙ୍କ ବିନୟମଧୁର କଥାରେ ନିବୃତ୍ତିଗଲେ— ଯଜ୍ଞ ଶେଷ ହେଲା ।



# ପଶୁ ହରଣ

ନାନା କଥାରେ ଥରକୁ ଥର ଏହିପରି ବିଘ୍ନ ପଡ଼ିଲା--ଏହିପରି ସଂସାର ଘଟନା ନେଇ ବିଶ୍ୱାମିତ୍ର ଥରକୁ ଥର ବ୍ୟତିବ୍ୟସ୍ତ ହେଲେ । ସେ ଶେଷକୁ ବିରକ୍ତ ହୋଇ କହିଲେ—"ନା, ଏ ଦକ୍ଷିଣ ଦେଶରେ ଆଉ ତପସ୍ୟା କରି ହେବ ନାହିଁ । ଚାଲ ସମସ୍ତେ ପଶ୍ଚିମ ଦେଶକୁ ଯିବା । ସେଆଡ଼େ ପୁଷ୍କର କ୍ଷେତ୍ର ବୋଲି ଗୋଟିଏ ବଡ଼ ସୁନ୍ଦର ସ୍ଥାନ ଅଛି । ସ୍ଥାନଟି ନିର୍ଜନ, ନିକାଞ୍ଚନ, ବଡ଼ ସୁଖଦାୟକ । ସେଠାରେ ତପସ୍ୟା କଲେ ମଝିରେ ମଝିରେ ଆଉ ଏପରି ବାଧାବିଘ୍ନ ପଡ଼ିବ ନାହିଁ ।" ନିଜ ଶିଷ୍ୟମାନଙ୍କୁ, ସାଙ୍ଗସାଥି ଆଉ ଆଉ ଋଷିମାନଙ୍କୁ ଧରି ବିଶ୍ୱାମିତ୍ର ପୁଷ୍କର କ୍ଷେତ୍ରକୁ ଗଲେ । ସେଠାରେ ପୁଣି କଠୋର ତପସ୍ୟା ଆରମ୍ଭ ହେଲା ।

ଠିକ୍ ସେହି ସମୟକୁ ଅଯୋଧ୍ୟାର ରାଜା ଅମ୍ବରୀଷ ଅଶ୍ୱମେଧ-ଯାଗ ଆରମ୍ଭ କରିଥିଲେ । ରାଜାଙ୍କ ସଙ୍ଗେ ଦ୍ୱେଷ କରି, ନିଜେ ଦେବ-ରାଜ ଇନ୍ଦ୍ର, କୌଶଳରେ ଯଜ୍ଞ-ଅଶ୍ୱ ଅପହରଣ କରି ନେଲେ—ଯଜ୍ଞ ଅପୂର୍ଣ୍ଣ ରହିଲା । ବ୍ରାହ୍ମଣମାନେ ରାଜାଙ୍କୁ କହିଲେ, "ଯେ ରକ୍ଷା କରି ନ ପାରେ, ସେ ରାଜା ହେବ କାହିଁକି ? ସକଳ ପାପ, ସକଳ ଦୋଷ ରାଜାର । ଯଜ୍ଞ ଆରମ୍ଭ କଲେ, ଶେଷ କରିବାକୁ ହେବ— ପଶୁ ନ ମିଳିଲା ତ ପ୍ରାୟଶ୍ଚିତ୍ତ ସ୍ୱରୂପ ଯେ କୌଣସିମତେ ଗୋଟିଏ ନର ଆଣି ବଳି ଦେବାକୁ ହେବ ।" ଏହା କି ସମ୍ଭବ ? ଜୀବନ ପାଇଁ ସବୁ ! କିଏ ଛାର ଅର୍ଥ ସକାଶେ ଜୀବନ ବିକ୍ରୟ କରି ପାରେ ? ଯାର ପ୍ରାଣରେ ଲେଶମାତ୍ର ସ୍ନେହ ମମତା ଅଛି, ସେ କି ପ୍ରାଣର ପୁତ୍ର, କନ୍ୟା, ସ୍ନେହୀ ସ୍ୱଜନଙ୍କ ଜୀବନ ଦେଇ ଅର୍ଥ ଗ୍ରହଣ କରି ପାରିବ ? ଅମ୍ବରୀଷ ପୃଥିବୀ ବୁଲି ଗଲେ, କେଉଁଠାରେ ମନୋବାଞ୍ଛା ପୂର୍ଣ୍ଣ ହେଲା ନାହିଁ । ବୁଲି ବୁଲି ଶେଷରେ ଋଚୀକ ମୁନିଙ୍କ ଆଶ୍ରମରେ ଆସି ପହଞ୍ଚିଲେ ।

ଦେଖିଲେ, ମୁନି ବନ୍ଧୁ ପୁତ୍ର କଳେବରଙ୍କୁ, ନେଇ ବସିଅଛନ୍ତି । ଶରୀର ତେଜରେ ଚତୁର୍ଦ୍ଦିଗ ଆଲୋକିତ ହୋଇ ଯାଉଛି । ଅମ୍ବରୀଷ ସେଠାରେ କେତେକ ଦିନ ରହିଲେ । ନିଜର ଭକ୍ତି ବିନୟ, ସେବା ଶୁଶ୍ରୂଷାରେ ମୁନିଙ୍କୁ ସନ୍ତୁଷ୍ଟ କଲେ । ମୁନି ସନ୍ତୁଷ୍ଟ ହେବାରୁ କହିଲେ,— "ସାରା ପୃଥିବୀ ଖୋଜି ସାରିଲିଣି, ମୋର ଯଜ୍ଞ-ପଶୁଟି କିଏ ନେଇଛି ପାଉ ନାହିଁ— ଯଜ୍ଞ ସେହିପରି ଅପୂର୍ଣ୍ଣ ରହିଛି । ଆପଣ ଗୋଟିଏ ପୁତ୍ର ଦେଇ ପାରିବେ କି ? ଯଦି ଦିଅନ୍ତେ, ମୋର ଯଜ୍ଞ ରକ୍ଷା ହୁଅନ୍ତା— ଆଉ ଆପଣ ଯେ ମୂଲ୍ୟ ମାଗନ୍ତେ ଦିଅନ୍ତି— ଜୀବନରେ ଏ ଉପକାର ଭୁଲି ପାରନ୍ତି ନାହିଁ ।" ମୁନି କହିଲେ, "ମୁଁ ତ ମୋର ବଡ଼ ପୁଅକୁ କେବେ ହେଲେ ଛାଡ଼ି ପାରିବି ନାହିଁ— ସେ ଯେ ପିଣ୍ଡର ଅଧିକାରୀ ।" ତାଙ୍କ ପତ୍ନୀ କହିଲେ, "ସାନ ପୁଅ ମୋର ପ୍ରାଣରୁ ଅଧିକ— ସେ ଗଲେ, ମୁଁ ପ୍ରାଣ ଧରି, ରହି ପାରିବି ନାହିଁ । ମଝିଆଁ ପୁଅ ବାପ ମାଆଙ୍କ ମନ ଜାଣି, ଯଜ୍ଞପଶୁ ହେବାକୁ ଆନନ୍ଦରେ ରାଜି ହେଲେ । ଯଜ୍ଞରେ, ଦେବତାମାନଙ୍କ ଉଦ୍ଦେଶ୍ୟରେ ପ୍ରାଣ ଦେବା କେତେ ଜଣଙ୍କ ଭାଗ୍ୟରେ ଘଟେ ? ମୁନିଙ୍କୁ, ଲକ୍ଷେ ଧେନୁ, କୋଟି ରତ୍ନ ଦେଇ ଅମ୍ବରୀଷ ଶୁନଃଶେଫଙ୍କୁ, ରଥରେ ବସାଇ ରାଜ୍ୟକୁ ଫେରିଲେ । ତାଙ୍କ ଆନନ୍ଦ କିଏ କହିବ ?

ବାଟରେ ପୁଷ୍କର କ୍ଷେତ୍ର ପଡ଼ିଲା । ଉନ୍ନ ଉଦଆ ଖରା— ଶୋଷରେ ହାଡ଼ା ଫାଟି ପଡ଼ୁଛି— ତାପରେ ପୁଣି ପଥଶ୍ରମରେ କ୍ଲାନ୍ତ ଶ୍ରାନ୍ତ । ନିଜେ ରଥରୁ ଓହ୍ଲାଇ ବିଶ୍ରାମ କଲେ । ଚତୁର୍ଦ୍ଦିଗରେ ସୁନ୍ଦର ଅରଣ୍ୟ; ଦେଖିଲେ ଆଖି କାଢ଼ି ହେଉ ନାହିଁ । ସେ ଶୋଭା ଦେଖି ଶୁନଃଶେଫଙ୍କୁ ଜୀବନ ବଡ଼ ମଧୁମୟ ବୋଧହେଲା— ଏତେ ଶୀଘ୍ର ଏ ସୁନ୍ଦର ଧରା ଛାଡ଼ି ଚାଲିଯିବାକୁ ଇଚ୍ଛା ହେଲା ନାହିଁ; ମରଣ ବଡ଼ ଭୟାବହ ଜଣା ପଡ଼ିଲା । ତଥାପି ସ୍ୱାଡ଼େ ସିଥିଡ଼େ ବୁଲି ବୁଲି ଅରଣ୍ୟର ଶୋଭା

ଦେଖି ଲାଗିଲେ । ମନ ଭୁଲାଇ ନେବାକୁ ଚେଷ୍ଟା କଲେ—ପାରିଲେ ନାହିଁ । ଦୈବ ଯୋଗକୁ ବୁଲୁ ବୁଲୁ ବିଶ୍ୱାମିତ୍ରଙ୍କ ଆଗରେ ଆସି ପହଞ୍ଚି-ଗଲେ । ବିଶ୍ୱାମିତ୍ର ଲେଖାରେ ତାଙ୍କର ମାମୁ । ମାମୁଙ୍କୁ ଆଗରେ ଦେଖି ରୁଦ୍ଧ ଶୋକ ଉଛୁଳି ପଡ଼ିଲା । ମାତ୍ର ଗଲାବେଳେ ପ୍ରାଣ ଦେବା ସହଜ କଥା; କିନ୍ତୁ ରକ୍ତ ଟିକିଏ ଶୀତଳ ହୋଇ ଆସିଲେ, ଜୀବନର ମାୟା ସହଜରେ ଛାଡ଼ ହୁଏ ନାହିଁ । ମୃତ୍ୟୁ ଚିନ୍ତା କରୁ କରୁ ଶୁନଃଶେପ ପ୍ରକମ୍ପିତ ହେଲେ । ସେଥିରେ ପୁଣି ପିପାସା, ପଥଶ୍ରମ ମିଶିଗଲା । ନିତାନ୍ତ ଅବଶ ହୋଇ ବାଳକ କାନ୍ଦି କାନ୍ଦି ମାମୁଙ୍କ କୋଳରେ ଢଳି ପଡ଼ିଲେ । ବିକଳ ହୋଇ କହିଲେ, "ମାମୁ, ବାପା ମାଆ ମୋତେ ଛାଡ଼ି ଦେଇଛନ୍ତି— ଜ୍ଞାତିବନ୍ଧୁ, ସ୍ନେହୀସ୍ୱଜନ ସକଳ ସମ୍ପର୍କ ଶେଷ ହୋଇଛି । ଆପଣ ଅନାଥ, ନିରାଶ୍ରୟର ଆଶ୍ରୟ — ମୋତେ ରକ୍ଷା କରନ୍ତୁ । ମୁଁ ଶରଣ ପଶୁଛି— ଆପଣଙ୍କର ଧର୍ମ ଧ୍ରୁବ ହେଉ । ପୁତ୍ର ବୋଲି ବିଚାରି, ମୋତେ ସାହା ହୁଅନ୍ତୁ— ଉଦ୍ଧାର କରନ୍ତୁ ।" ଶୁନଃଶେପ ସକଳ ଘଟଣା ବର୍ଣ୍ଣନ କରିଗଲେ । ଆଉ ଶେଷରେ କହିଲେ, "ମାମୁ, ରାଜା ଯେପରି ଯଜ୍ଞଫଳ ଲାଭ କରନ୍ତି, ସେହିପରି କରିବାକୁ ହେବ— ତା ନ ହେଲେ, ମୋର ବଞ୍ଚିବାର ଉପାୟ ନାହିଁ ।"

ବାଳକର ବଞ୍ଚିବା ପ୍ରତି ଏ ମମତା— ଅଥଚ ଏତେ ଦୂର ଧର୍ମଜ୍ଞାନ ଦେଖି ବିଶ୍ୱାମିତ୍ର ଆଶ୍ଚର୍ଯ୍ୟ ହେଲେ । ସେ ବିକଳ ଦେଖି, କରୁଣ କଥା ଶୁଣି ତାଙ୍କର ହୃଦୟ ଗଳି ପଡ଼ିଲା । କହିଲେ, "କିଛି ଭୟ ନାହିଁ ବାବା, ମୁଁ ତତେ ରକ୍ଷା କରିବି ।" ତା ପରେ ନିଜ ପୁତ୍ରମାନଙ୍କୁ ଡାକି କହିଲେ, "ତୁମେମାନେ ସମସ୍ତେ ଧାର୍ମିକ ଓ ସୁପୁତ୍ର, ପରଲୋକରେ ପିତାର ମଙ୍ଗଳ ବିଧାନ କରିବା ପୁତ୍ରର କାର୍ଯ୍ୟ । ଏ ଅନାଥ ବାଳକଟି ମୋଠାରେ ଶରଣ ପଶିଛି— ଶରଣ ରକ୍ଷା ନ କଲେ ପରଲୋକରେ ମୋର ଭଲ ଗତି ନାହିଁ । ତୁମମାନଙ୍କ ମଧ୍ୟରୁ କେହି ଜଣେ ଅମ୍ବରୀଷ

ରାଜାଙ୍କର ଯଜ୍ଞପଶୁ ହୋଇ, ମୋର ଧର୍ମ ରକ୍ଷା କର । ବାପାଙ୍କ କଥାରେ ପୁଅମାନଙ୍କର ଅଭିମାନ ହେଲା । ସେମାନେ ପ୍ରାଣର ମାୟା ସହଜରେ କାଟି ପାରିଲେ ନାହିଁ । କହିଲେ, "ବାପା, ନିଜ ପୁଅକୁ ବଳି ଦେଇ, ଦାଣ୍ଡର ପିଲାଟାକୁ ରକ୍ଷା କରିବା କିଏ ? ଜୀବ ପ୍ରତି ଦୟା କରି, କିଏ ନିଜର ମାଂସ ଭକ୍ଷଣ କରେ କି ?

ଏତିକି କଥାରେ ବିଶ୍ୱାମିତ୍ର କ୍ରୋଧରେ ଜଳି ଉଠି, ପୁଅମାନଙ୍କୁ ଅଭିଶାପ ଦେଲେ । "ପାମର ଗୁଡ଼ାକ, ମୋ ପରି ବାପାର କଥା ମାନିଲ ନାହିଁ— ତୁମେ ତେବେ କି ପୁଅ ? ବଶିଷ୍ଠଙ୍କ ପୁତ୍ରମାନଙ୍କ ପରି ହଜାର ହଜାର ବର୍ଷ ଚଣ୍ଡାଳ ହୋଇ ରହ ।" ନିଜର ପୁଅମାନଙ୍କୁ ଏହିପରି ଅଭିଶାପ ଦେଇ, ବିଶ୍ୱାମିତ୍ର ଶୁନଃଶେଫଙ୍କୁ କହିଲେ, "ଭୟ ନାହିଁ, ବାବା ମୁଁ ଉପାୟ ବତାଉଛି, ରକ୍ଷା ପାଇବୁ । ଯେତେବେଳେ ବ୍ରାହ୍ମଣ-ମାନେ ତୋତେ ରକ୍ତବସନ ପିନ୍ଧାଇ ଦେବେ— ବେକରେ ଫୁଲମାଳ ଲମ୍ବାଇ ଦେଇ, କୁଶ ଡୋରରେ ବାନ୍ଧି ବଳି ଦେବାକୁ ନେବେ, ତୁ ଏଇ ମନ୍ତ୍ର ଦୁଇ ଧାଡ଼ି ଜପୁଥିବୁ— ତୋର କିଛି ଅନିଷ୍ଟ ହେବ ନାହିଁ ।" ଶୁନଃଶେଫ ଭଲ କରି ମନ୍ତ୍ର ଦୁଇ ଧାଡ଼ି ମନେ ରଖିଲେ । ସେହିକ୍ଷଣି ମାମୁଙ୍କୁ ପ୍ରଣାମ କରି, ବିଦାୟ ନେଇ ରାଜାଙ୍କ ନିକଟକୁ ଚାଲି ଗଲେ ।

ଯାଇଁ କହିଲେ, "ଆଉ ବିଳମ୍ବ କାହିଁକି ? ମୋତେ ନେଇ ଆପଣ ଯଜ୍ଞ ରକ୍ଷା କରନ୍ତୁ ।" ବାଳକର ସାହସରେ ରାଜା ଆଶ୍ଚର୍ଯ୍ୟ ହୋଇ, ଯଜ୍ଞ-ଶାଳାରେ ଯାଇଁ ପହଞ୍ଚିଲେ । ବ୍ରାହ୍ମଣମାନଙ୍କ ଆଦେଶରେ ଶୁନଃଶେଫ ରକ୍ତବସନ ପିନ୍ଧି, କୁଶ ଦଉଡ଼ିରେ ଯୂପକାଠରେ ଆସି ବନ୍ଧା ହେଲେ । ପ୍ରାଣ ଯିବା ସମୟ । ବାଳକ ଅନ୍ୟ ଉପାୟ ନ ଦେଖି, ଭକ୍ତିପୂତ ହୃଦୟରେ, ନିବିଷ୍ଟ ମନରେ ସେଇ ମନ୍ତ୍ର ଦୁଇ ଧାଡ଼ି ଜପ କରୁଥାନ୍ତି । ଆଶ୍ଚର୍ଯ୍ୟ କଥା, ବେକରେ ଖଣ୍ଡା ଆସି ପଡ଼ିଲା— କିଛି ହେଲା ନାହିଁ ! ମନ୍ତ୍ରର କି ଅଦ୍ଭୁତ ଶକ୍ତି !

ବାଳକଟିକୁ ଦେଖି, ଇନ୍ଦ୍ରାଦି ଦେବତାମାନେ ଆନନ୍ଦରେ ଭୋଳ ହୋଇ ଗଲେ— ନିଜ ନିଜର ପୁଅଠାରୁ ବଳି ଏ ବାଳକ ଠାରେ ସ୍ନେହ ହେଲା— ସମସ୍ତେ ବାଳକକୁ ଦୀର୍ଘ ଜୀବନ ଦେଇ ଅନ୍ତର୍ହିତ ହୋଇ ଗଲେ । ଆଉ ଇନ୍ଦ୍ରଙ୍କ ଅନୁଗ୍ରହରେ ରାଜା ଯଜ୍ଞ ଫଳ ପାଇଲେ— ତାଙ୍କର କାମନା ପରିପୂର୍ଣ୍ଣ ହେଲା ।



## ମେନକା

ସେହି ପୁଷ୍କର କ୍ଷେତ୍ରରେ ତପସ୍ୟା କରୁ କରୁ ପୁଣି ହଜାର ବର୍ଷ ବିତିଗଲା । ବ୍ରତ ଶେଷରେ, ଈଶ୍ୱରଙ୍କୁ ନୈବେଦ୍ୟ ଦେଇ, ନୂତନ କରି ଅନ୍ନ ଗ୍ରହଣ କରିବାକୁ ହୁଏ । ବିଶ୍ୱାମିତ୍ର ସ୍ନାନ ସାରି, ଅନ୍ନ ନୈବେଦ୍ୟ ଦେବାକୁ ବସିଛନ୍ତି, ସ୍ୱର୍ଗର ଦେବତାମାନଙ୍କୁ ନେଇ ବ୍ରହ୍ମା ଆସି ପହଞ୍ଚି ଗଲେ । କହିଲେ, "ଧନ୍ୟ ଧନ୍ୟ ବିଶ୍ୱାମିତ୍ର, ତୁମ ତପସ୍ୟା ପରି ତପସ୍ୟା ଦେଖା ନ ଥିଲା । ସବୁ ଦେବତାମାନେ ଆଶ୍ଚର୍ଯ୍ୟ ହୋଇ, ଧନ୍ୟ ଧନ୍ୟ କରୁଛନ୍ତି । ତୁମେ ଆଜ ଠାରୁ ଋଷି ହେଲ । ବିଶ୍ୱାମିତ୍ରଙ୍କ ହୃଦୟ ଲଜ୍ଜାରେ, ଦୁଃଖରେ ଯାଣ୍ଟି ହେଲା । ଭାବିଲେ, "ଏତେ ତପସ୍ୟା କରି ଏବେ ଋଷିଟିଏ ହେଲି ! ଆଉ ସମସ୍ତଙ୍କୁ ଆଉ ମୁହଁ ଦେଖାଇବି କାହାକୁ ?" ଆଉ ଅନ୍ନ ଗ୍ରହଣ ନ କରି ସେହି ଅବସ୍ଥାରେ ସେଇଠି ପୁଣି ତପସ୍ୟା ଆରମ୍ଭ କରି ଦେଲେ ।

ସେହି ତପସ୍ୟାରେ ପୁଷ୍କର କ୍ଷେତ୍ରର ନାମ ତ୍ରିଭୁବନରେ ବାଜି ଗଲା । ସେ ଘୋର ତପସ୍ୟା ଦେଖିବାକୁ କେତେ ସୁର କିନ୍ନର, କେତେ ଯକ୍ଷ ରକ୍ଷ, ସିଦ୍ଧସାଧକ ଆସିଲେ । ଏ ତପସ୍ୟା କଥା ସ୍ୱର୍ଗର ବିଦ୍ୟାଧରୀ-ମାନଙ୍କ ମଧ୍ୟରେ ଯାଇଁ ଉଠିଲା । ବିଦ୍ୟାଧରୀମାନେ ସ୍ୱର୍ଗର ଅପ୍ସରା—

ସେ ସୁନ୍ଦର ପଣର ପଟାନ୍ତର ନାହିଁ । ଅପ୍ସରାମାନଙ୍କ ବୟସ କେବେ ଖସେ ନାହିଁ, କି ସେ ସୌନ୍ଦର୍ଯ୍ୟ କେବେ ମଉଳେ ନାହିଁ । ପୁଣି ସ୍ୱର୍ଗର ସବୁ ଠାରୁ ସୁନ୍ଦର ସୁନ୍ଦର ଅଳଙ୍କାର, ବେଶଭୂଷା, ମଣିମାଣିକ୍ୟ ଅପ୍ସରାମାନେ ପିନ୍ଧନ୍ତି । ତାଙ୍କ ସୌନ୍ଦର୍ଯ୍ୟ ଦେଖିଲେ, ଗାନ ବାଜଣା, ନୃତ୍ୟଗୀତ ଶୁଣିଲେ ପଥର ବି ତରଳ ହୋଇ ଯିବ— ଜୀବଜନ୍ତୁ, ଗଛଲତା ବଶ ହୋଇ ରହିଁ ରହିବେ । ମେନକା ସେଇ ଅପ୍ସରାମାନଙ୍କ ମଧ୍ୟରେ ଭାରି ସୁନ୍ଦରୀ, ତାଙ୍କର ଏ ତପସ୍ୟା ଦେଖି ଯିବାକୁ ବଡ଼ ଇଚ୍ଛା ହେଲା । ବିଶ୍ୱାମିତ୍ର ଯେଉଁ ବଣରେ ତପସ୍ୟା କରୁଥିଲେ, ମେନକା ସେଇ ବଣକୁ ଆସିଲେ । ସୌନ୍ଦର୍ଯ୍ୟରେ, ବେଶଭୂଷାରେ ଚତୁର୍ଦ୍ଦିଗ ଝଲକ ପଡ଼ୁଛି । କୋଇଲି ଠାରୁ ଅଧିକ ମଧୁର ସ୍ୱରରେ ଗୀତ ଗାଇ ଗାଇ ମେନକା ବୁଲୁଛନ୍ତି । ନୀଳ ବନସ୍ତରେ ସେ ସୁବର୍ଣ୍ଣ ଗୌର ରୂପ, ମେଘରେ ବିଜୁଳି ଖେଳିଗଲା ପରି ସୁନ୍ଦର ଦିଶିଲା । ବିଶ୍ୱାମିତ୍ର ବିମୋହିତ ହୋଇ ଭାବିଲେ "ପତ୍ନୀ ଅଭାବରେ ମାନବ ଅପୂର୍ଣ୍ଣ— ଜୀବନ ନୀରସ । ପତ୍ନୀର ଯୋଗ ହେଲେ କଠୋର ସାଧନାରୁ ମଧ୍ୟ ଅମୃତ ଝରିବ ।" ଏତେ ଦିନ ପରେ ସଂସାରର ତରଳ ମଧୁର ସୁଖ ପୁଣି ସୁଖ ଲାଗିଲା । ବିଶ୍ୱାମିତ୍ର ମେନକାଙ୍କ ପ୍ରେମରେ ପଡ଼ିଲେ— ତାଙ୍କୁ ବିଭା ହୋଇ— ସେ ବନ ଭିତରେ ଘର ଦ୍ୱାର କରି, ବହୁତ ଦିନ ସଂସାର କଲେ । ମନେ ହେଲା— ମେନକା ତାଙ୍କ ତପସ୍ୟାର ଫଳ— ସ୍ୱର୍ଗରୁ ଅଧିକ ।

ସଂସାରର ତରଳ ଜୀବନରେ ବିଶ୍ୱାମିତ୍ରଙ୍କର ସେ ସାଧନା, ଉପାସନା, କଠୋର ତପସ୍ୟା ହେଉଁ ଅଡ଼େ ଭାସି ଗଲା— ସେ ବ୍ରହ୍ମତେଜ ମଳିନ ପଡ଼ିଲା । ଦଶହି ବର୍ଷରେ କି ପରିବର୍ତ୍ତନ ! ବିଶ୍ୱାମିତ୍ର ନିଜର ଦୁରବସ୍ଥା ବୁଝି ପାରିଲେ । ବୁଝି ପାରିଲେ— ମେନକାହିଁ ସକଳ ଅନର୍ଥର ମୂଳ— ତାଙ୍କ ସୁଖସ୍ୱପ୍ନ ସ୍ୱର୍ଗ-ଦଥର କଣ୍ଟକ । ଘୋର ଅନୁତାପ ଆସିଲା— ବଶିଷ୍ଠଙ୍କ କଥା ମନେ ପଡ଼ି ଲଜ୍ଜାରେ, ଅପମାନରେ

ପ୍ରକମ୍ପିତ ହେଲେ । ମେନକା ବୁଦ୍ଧିମତୀ ସୁରବାଳା । ବିଶ୍ୱାମିତ୍ରଙ୍କୁ ଦେଖି କ୍ଷଣକେ ସମସ୍ତ ଘଟଣା ଜାଣିପାରିଲେ । ଏ ମଧ୍ୟରେ ମେନକାଙ୍କର ଗୋଟିଏ ଝିଅ ହୋଇଥିଲା । ଝିଅ ନୁହେଁ, ଗୋଟିଏ ରତ୍ନ । ଯେ ଗଠନ, ସେପରି ସୌନ୍ଦର୍ଯ୍ୟ ଦେଖା ନଥିଲା । ମେନକା ଘଟନା ବଡ଼ ବିଷମ ବୁଝିପାରି, ସେଇ ଭୁବନ ମୋହିନୀ କନ୍ୟାଟିକୁ ପିତାଙ୍କ ଚରଣ ତଳେ ଆଣି ଶୁଆଇ ଦେଲେ । କନ୍ୟାର ରୂପ ଦେଖି, ପିତୃ ହୃଦୟ ପ୍ରେମରେ ପରିପୂର୍ଣ୍ଣ ହେଲା— ସେ ରାଗ ମଉଳି ପଡ଼ିଲା । ଧନ୍ୟରେ ମାୟା ! ଟିକିଏ ବିରକ୍ତ ହୋଇ, ବିଶ୍ୱାମିତ୍ର କହିଲେ, "ନା, ଆଉ ହେବ ନାହିଁ— ମୁଁ ଆଉ ତୁମକୁ, କି ତୁମର କଥାକୁ ଗ୍ରହିବି ନାହିଁ । ଭଲ ଚାହୁଁ ଥିଲେ, ପାଖରୁ ଅନ୍ତର ହୁଅ ।" ମେନକା ଋଷିଙ୍କ କୋପରୁ ରକ୍ଷା ପାଇ ଆନନ୍ଦରେ ଚାଲି ଗଲେ । କିନ୍ତୁ ଝିଅଟିକୁ ମହର୍ଷି କଣ୍ୱଙ୍କ ଆଶ୍ରମ ପାଖରେ ଛାଡ଼ି ଯାଇଥିଲେ । କନ୍ୟାଟି କଣ୍ୱଙ୍କ ଆଶ୍ରମରେ ପରିପାଳିତ ହେଲା— ପରେ ମହାରାଜା ଦୁଷ୍ମନ୍ତଙ୍କର ପାଟମହାଦେଈ ହୋଇ ସୌନ୍ଦର୍ଯ୍ୟରେ ସତୀତ୍ୱରେ ରମଣୀ ସମାଜର ଆଦର୍ଶ ହୋଇଥିଲା । ସେଇ କନ୍ୟାଟିହିଁ ଶକୁନ୍ତଳା— ମହା ପ୍ରତାପ ଭରତ ରାଜାଙ୍କ ମାତା ।

ସଂସାର ମାୟାରେ ପଡ଼ି ବିଶ୍ୱାମିତ୍ରଙ୍କର ସକଳ ଦୁର୍ଦ୍ଦଶା । ପ୍ରତିଜ୍ଞା କଲେ, କୌଣସିମତେ ଦମନ କରିବେ । ସେ ସେ ସ୍ଥାନ ଛାଡ଼ି ଉତ୍ତର ପର୍ବତକୁ ବାହାରି ଗଲେ । ସେଠାରେ କୌଶିକୀ ନଈ କୂଳରେ ବଡ଼ କଠୋର ତପସ୍ୟା ଆରମ୍ଭ କଲେ । ଦେଖୁଁ ଦେଖୁ ପୁଣି ହଜାର ବିତିଗଲା— ତପସ୍ୟା ଚାଲିଛି । ସ୍ୱର୍ଗର ଦେବତାମାନେ, ଋଷି ସିଦ୍ଧପୁରୁଷ-ମାନେ ଭୟରେ ଥରିଲେ । ନିଜେ ବ୍ରହ୍ମା ଆସି କହିଗଲେ, "ତୁମ ତପସ୍ୟାରେ ବଡ଼ ସନ୍ତୁଷ୍ଟ ହେଲି— ତୁମେ ଆଜି ଠାରୁ ମହର୍ଷି ହେଲ, ।" ବିଶ୍ୱାମିତ୍ରଙ୍କ ମୁହଁ ଶୁଖିଗଲା— କହିଲେ, "କଣ, ମୋର ତେବେ ଇନ୍ଦ୍ରିୟ ଜୟ ହୋଇ ନାହିଁ— ମୁଁ ଏବେ, ଏତେ ତପସ୍ୟା ପରେ ବ

ବ୍ରହ୍ମର୍ଷି ହେବା ପାଇଁ ଉପଯୁକ୍ତ ହେଲି ନାହିଁ ? ତେବେ ଆଉ କାହିଁକି ? ଆଉ କାହିଁକି ଏ ଜୀବନ ଧରି ରହିଥିବି ?" ବ୍ରହ୍ମା ହିକିଏ ଦୁଃଖିତ ହୋଇ କହିଲେ, "ବତ୍ସ ନାହିଁ ମହର୍ଷି, ତୁମ ଚେଷ୍ଟାରେ କିଛି ଅସମ୍ଭବ ରହିବ ନାହିଁ । ତୁମେ ଶୀଘ୍ର ଇନ୍ଦ୍ରିୟ ଜୟକର, ବ୍ରହ୍ମର୍ଷିର ଉପଯୁକ୍ତ ହେବ ।" ନିଜେ ବ୍ରହ୍ମାଙ୍କ ଠାରୁ ଏ ଆଶ୍ୱାସନା ପାଇ, ବିଶ୍ୱାମିତ୍ର ଆନନ୍ଦରେ କାନ୍ଦି ପକାଇଲେ । ପ୍ରାଣରେ ଅପୂର୍ବ ଆଶା ଉତ୍ସାହ ଖେଳିଗଲା ।



## ରମ୍ଭା ଅଭିଶାପରେ ପଥର ହୋଇ ଟଳି ପଡିଲେ

ଅପାର ଉତ୍ସାହରେ ବିଶ୍ୱାମିତ୍ର ପୁଣି ଅଦ୍ଭୁତ ଅଗାଧ ତପସ୍ୟା ଆରମ୍ଭ କରିଦେଲେ । ସେପରି ତପସ୍ୟା ଦେଖା ନଥିଲା— ଶୁଣା ନଥିଲା । ଉହ୍ନଉହ୍ନିଆ ଖରା— ମୁଣ୍ଡ ଉପରେ ସୂର୍ଯ୍ୟ ନିଆଁ ବର୍ଷିଦେଉଛନ୍ତି— ପାଦ ତଳେ ଜଳିଆ ଫୁଟୁଛି— ଚତୁର୍ଦ୍ଦିଗରେ ଡହ ଡହ ନିଆଁ ଜାଳି ଦେଇ, ନ ଖାଇ ନ ପିଇ, ଏକ ଗୋଡ଼କିଆ, ଦୁଇହାତ ଉପରକୁ ଟେକି କିଏ ତପସ୍ୟା କରି ପାରେ ? ଏହିପରି ତପସ୍ୟାରେ ଖରା ଚାରିମାସ କଟିଯାଏ । ବର୍ଷା ଆସେ । ଖୋଲା ଯାଗା-- ମୂଷଳଧାରାରେ ବର୍ଷା କେତେବେଳେ ବା କୁଆପଥର ବର୍ଷି ଯାଉଛି— ପବନରେ, ଘୋର ବତାସରେ ସାରା ପୃଥିବୀ ଥରି ଉଠୁଛି, ତଥାପି ସେହିପରି ଛିଡ଼ା ହୋଇ ତପସ୍ୟା ଚାଲିଥାଏ । ବର୍ଷା ଯାଏ, ଶୀତ ଆସେ । ସେ ତପସ୍ୟା ଆହୁରି ଭୀଷଣ । ସବୁବେଳେ ପାଣି ଭିତରେ ବୁଡ଼ିରହି ପୁଣି ତପସ୍ୟା ହେବ ! ରକ୍ତମାଂସ ଦେହରେ ଏପରି ତପସ୍ୟା କି ସମ୍ଭବ ? ବିଶ୍ୱାମିତ୍ରଙ୍କୁ କିଛି ଅସମ୍ଭବ ରହିଲା ନାହିଁ— ତପସ୍ୟା ଚାଲିଲା ।

ଏପରି ତପସ୍ୟା— ଏ କଷ୍ଟ ଦେଖିଲେ କାହାର ହୃଦୟ ଟଳି ନ ଯିବ ? ଇନ୍ଦ୍ରାଦି ଦେବତାମାନଙ୍କ ମଧ୍ୟରେ ଭାବନା ପଡ଼ିଗଲା । ସମସ୍ତେ ବିଚାରିଲେ, "ଏ ତପସ୍ୟାରେ ବିଶ୍ୱାମିତ୍ର, ଇନ୍ଦ୍ର କି ଚନ୍ଦ୍ର କଣ ହୋଇଯିବ, କେଜାଣି ।" ଦେବତାମାନଙ୍କ ମନରେ ଈର୍ଷା ହେଲା, ଦ୍ୱେଷଭାବ ଜନ୍ମିଲା । ଫଳେ ଇନ୍ଦ୍ର ବିଶ୍ୱାମିତ୍ରଙ୍କ ଏ ତପସ୍ୟା ଭାଙ୍ଗିବା ପାଇଁ ନାନା ଉପାୟ ପାଞ୍ଚି ହେଲେ ।

କ୍ରମେ ଶୀତ ଯାଇଁ, ବସନ୍ତ ଆସିଲା । ସାରା ସଂସାର ସୁଖରେ. ସୌନ୍ଦର୍ଯ୍ୟରେ ଉଚ୍ଛସି ଉଠିଲା । କୋକିଳ ପଞ୍ଚମ ତାନରେ ସଙ୍ଗୀତ ଛାଡ ଦେଲା । ବୃକ୍ଷ ଲତା ଫଲ ଫୁଲରେ ଭାଙ୍ଗି ପଡ଼ିଲେ । ପଶୁ ପକ୍ଷୀ ଜୀବ ସକଳ ମଧୁର ମୂର୍ତ୍ତି ଧରି ସଂସାର ସୁଖରେ ଭାସିଲେ । ମୃଦୁମନ୍ଦ ପବନରେ ପୁଷ୍ପର ସୁଗନ୍ଧ ଭାସି ଆସି, ପ୍ରତି ପ୍ରାଣରେ ଉନ୍ମାଦନା ଢାଳି-ଦେଲା । ଠିକ୍ ସମୟ ବୁଝି ଇନ୍ଦ୍ର ରମ୍ଭାଙ୍କୁ ଡକାଇଲେ । ବିଦ୍ୟାଧରୀ-ମାନଙ୍କ ମଧ୍ୟରେ ରମ୍ଭା ସବୁ ଠାରୁ ସୁନ୍ଦରୀ । ତାଙ୍କୁ ଡାକି କହିଲେ, "ରମ୍ଭା, ଆମମାନଙ୍କର ଗୋଟିଏ ଉପକାର କରି ପାରିବ ? ତୁମେ ସ୍ୱର୍ଗର ଅପୂର୍ବ ସୁନ୍ଦରୀ— ତୁମର ଏ ସୌନ୍ଦର୍ଯ୍ୟ ଦେଖିଲେ, କେଉଁ ଯତି ଟଳି ନ ଯିବ ? ବିଶ୍ୱାମିତ୍ରଙ୍କ ତପସ୍ୟାରେ ଆମର ଆସନ ସବୁ ଟଳମଳ ହୋଇ ଥିଲାଣି । ତୁମେ ଯାଇ, ତାଙ୍କ ମନ ସଂସାର ଦିଗକୁ ଫେରାଇ ପାରିବ ? ତା ନ ହେଲେ, ଆମର ଆଉ ରକ୍ଷା ନାହିଁ ।"

ଫଳେ ଦେବରାଜ ଇନ୍ଦ୍ରଙ୍କ ମୁଖରେ ନିଜର ପ୍ରଶଂସା ଶୁଣି ରମ୍ଭା ଟିକିଏ ଗର୍ବ ଅନୁଭବ କଲେ । ପୁଣି ବିଶ୍ୱାମିତ୍ରଙ୍କ ପରି ଉଗ୍ରତପା ଯତିଙ୍କ ଟଳାଇବା ସହଜ କଥା ନୁହେଁ ! ରମ୍ଭା ଟିକିଏ ଭୟଭୀତ ମଧ୍ୟ ହେଲେ । କହିଲେ, "ବିଶ୍ୱାମିତ୍ର, ସାମାନ୍ୟ ଋଷି ନୁହନ୍ତି— ତାଙ୍କୁ ଟଳାଇ ପାରିବ କିଏ ? ପୁଣି ଟିକିଏ କ୍ରୋଧ ହେଲା ତ— ସେଇକ୍ଷଣି ପ୍ରଳୟ କାଣ୍ଡ । ନା, ତା ହେବ ନାହିଁ ।" ଇନ୍ଦ୍ର ବହୁତ ବୁଝାଇ

କହିଲେ । କହିଲେ, "ମେନକା ଯାହା ସହଜରେ କରିଥିଲା— ତୁମ-ପରି ସୁନ୍ଦରୀ ତା ଚେଷ୍ଟା କଲେ, କରି ପାରିବ ନାହିଁ ? ଏ କିପରି କଥା ! ତୁମେ ଯାଅ, ଏ ମନୋହର ବସନ୍ତକାଳ ତୁମର ସାଥି ହେବ । ତୁମେ କେବେ ବିଫଳ ହୋଇ ବାହୁଡ଼ିବ ନାହିଁ ।" ଇନ୍ଦ୍ରଙ୍କ ପ୍ରବର୍ତ୍ତନାରେ ସୁରସୁନ୍ଦରୀ ରମ୍ଭା ପଡ଼ିଗଲେ । ସେ ଦିବ୍ୟ ସୁନ୍ଦର ମୂର୍ତ୍ତିକି ସ୍ୱର୍ଗର ବିଚିତ୍ର ବେଶଭୂଷାରେ ଆହୁରି ସୁନ୍ଦରି କରି ମଣ୍ଡିଦେଲେ । ପଞ୍ଚମ-ତାନରେ ସଙ୍ଗୀତ ଗାଇ ଗାଇ, ଆସି ବିଶ୍ୱାମିତ୍ରଙ୍କ ଆଗେ ଛିଡ଼ା ହୋଇ ଗଲେ । ବିଶ୍ୱାମିତ୍ର ମନ୍ତ୍ରମୁଗ୍ଧ ପରି ଦେଖିଲେ, ସେ ଅପୂର୍ବ ସୌନ୍ଦର୍ଯ୍ୟ, ଶୁଣିଲେ ସେ ଅମୃତମୟ କଣ୍ଠ ସ୍ୱର । ହୃଦୟରେ କ୍ଷଣେକ ବାସନା ଜଳି-ଉଠିଲା— ପୁଣି ପର କ୍ଷଣରେ କ୍ରୋଧରେ ପ୍ରକମ୍ପିତ ହେଲେ । ଓଠ କାମୁଡ଼ି, ରାଗରେ ଗରଜି ଉଠିଲେ, "ଅରେ ଏଇ ରମଣୀ ଯେନ ସର୍ବ-ନାଶ ଘଟିଥିଲା— ପୁଣି ଅରେ ସେଇ ଅଭିନୟ ! କିଣ, ବିଶ୍ୱାମିତ୍ର ଏଡ଼େ ହୀନ, ଏଡ଼େ ଦୁର୍ବଳ ଯେ କ୍ଷୁଦ୍ର ରମଣୀର ମୁଖ ଦେଖି, ଜୀବନର ପ୍ରତିଜ୍ଞା, ସୁଖମୟ ସ୍ୱର୍ଗ ଭୁଲିଯିବ ! ପାପୀୟସି, ବିଶ୍ୱାମିତ୍ରଙ୍କୁ ଭୁଲାଇବାକୁ ତୁ ସତେ ଆସିଛୁ ? କି କଷ୍ଟ, କି ଚିନ୍ତା, କି ବେଦନାରେ ଏ ପ୍ରାଣ ଛଟପଟ ହୋଇ ସଡ଼ୁଛି, ଦେଖୁ ନାହୁଁ ? ମୋର ଜୀବନ ନାଶ କରିବାକୁ ଆସିଛୁ— ତୋର ଟିକିଏ ବିଚାର ନାହିଁ ! ଛି ଛି, ରାକ୍ଷସି, ତୋର ହୃଦୟ ନାହିଁ ! ତୁ ନିଷ୍ଠୁର— ପଥର ଠାରୁ ମଧ୍ୟ ଆହୁରି କଠିନ । ସେଥିପାଇଁ ସହସ୍ରବର୍ଷ ଏଇଠାରେ ପଥର ହୋଇ ପଡ଼ିଥା— ପୁଣି କେହି ମହାତେଜା ବ୍ରାହ୍ମଣର ଅନୁଗ୍ରହ ହେଲେ ଯାଇଁ ଜୀବନ ପାଇ ଉଠିବୁ ।"

ପାଟିରୁ କଥା ବାହାରିଛି କି ନ ବାହାରିଛି, ସେହି ଅପରୂପ ମୂର୍ତ୍ତି ପଥର ଖଣ୍ଡ ହୋଇ ଟଳି ପଡ଼ିଲା । ସେ ଶୋଚନୀୟ ଦୃଶ୍ୟ ଦେଖି ଜାକେ ବିଶ୍ୱାମିତ୍ରଙ୍କ ବଜ୍ରକଠୋର ପ୍ରାଣ ପାଣି ହୋଇ ଗଲା । ଅନୁତାପରେ

ଅନ୍ତର ବିଦୀର୍ଣ୍ଣ ହେବାକୁ ବସିଲା; ଭାବିଲେ, "ଧିକ ମୋତେ ! କ୍ଷୁଦ୍ର ଅବଳାପ୍ରାଣୀ, କି ଦୋଷ ଅଛି ତାର ! କି ହୃଦୟହୀନ ମୁଁ ! ଏ କ୍ରୋଧ ଥିବା ଯାଏ ଆଉ କାହା ପ୍ରତି ଏପରି ନିଷ୍ଠୁର ଅଭିଶାପ ବାହାରିବ ନାହିଁ । ଇନ୍ଦ୍ରିୟମାନଙ୍କୁ ସମ୍ପୂର୍ଣ୍ଣ ଆୟତ୍ତ କରିବି । ଯେ ପର୍ଯ୍ୟନ୍ତ ବ୍ରାହ୍ମଣ୍ୟ ନ ମିଳୁଛି, ନିଶ୍ୱାସ ରୋଧ କରି ତପସ୍ୟା କରୁଥିବି ।"



## ଶେଷରେ ବ୍ରାହ୍ମଣ ହେଲେ

ପୁଷ୍କର କ୍ଷେତ୍ରରେ ରମ୍ଭାଙ୍କର ପ୍ରସ୍ତରମୟ ବିଗ୍ରହ ପଡ଼ି ରହିଲା । ସେ କରୁଣ ମୂର୍ତ୍ତି ଦେଖି ବିଶ୍ୱାମିତ୍ରଙ୍କ ହୃଦୟ ଫାଟିଗଲା । କ୍ରମେ ସେ ସ୍ଥାନରେ ତପସ୍ୟା କରିବା ଅସହ୍ୟ ହେଲା । ବିଶ୍ୱାମିତ୍ର ପୁଷ୍କର ଛାଡ଼ି ପୂର୍ବ ଦେଶରେ ଯାଇ ପୁଣି କଠୋର ତପସ୍ୟା ଆରମ୍ଭ କଲେ । ସେ ତପସ୍ୟା କିନ୍ତୁ ସମ୍ପୂର୍ଣ୍ଣ ନୂତନ ଢଙ୍ଗରେ । ଅତୀତ ଦୁଷ୍କୃତ ପାଇଁ ସେ ବେଦନା, ସେ ଅନୁତାପ, ସେ ଲୋତକ-ଧାର ସୃଷ୍ଟିରେ ନୂତନ । ଅନ୍ନ ତ୍ୟାଗ କରି, ନିଶ୍ୱାସ ରୁନ୍ଧି, ମୌନ ଭାବରେ ଅଚଳ ଅଟଳ ହୋଇ ବସିଥାନ୍ତି, ଅନର୍ଗଳ ଲୋତକ ଧାର ବହି ଯାଉଥାଏ । ବଜ୍ରକଠୋର ପ୍ରାଣ କ୍ରମେ ଲବଣୀ ଠାରୁ କୋମଳ ହୋଇ ଆସିଲା–– ଅନ୍ତରର ରାଗ, ଅହଂକାର, କଳୁଷକାଳିମା ସେ ଲୋତକରେ ଧୋଇ ହୋଇଗଲା । ବିଶ୍ୱାମିତ୍ରଙ୍କ ଅନ୍ତର ପ୍ରେମରେ ଢଳ ଢଳ ହେଲା । ସେ ପ୍ରେମମୟ ମୂର୍ତ୍ତିରୁ ସରସ ସୁନ୍ଦର ଜ୍ୟୋତି ଫୁଟି ବିକଶି ଉଠିଲା । ଜୀବଜନ୍ତୁମାନେ ପ୍ରେମରେ ଆକର୍ଷିତ ହୋଇ ଚତୁର୍ଦ୍ଦିଗରେ ଆନନ୍ଦରେ ଚରି ବୁଲିଲେ— ବିହଙ୍ଗକୁଳ ମଧୁର ସଙ୍ଗୀତ ଗାଇଲେ । ସଂସାରର ଅସାର ମାୟାରେ ବିଶ୍ୱାମିତ୍ରଙ୍କ ହୃଦୟ ଆଉ ବିଚଳିତ ହେବାର ନୁହେଁ । ସମସ୍ତ ବିଶ୍ୱ ଆଜି ତାଙ୍କର ପରିବାର— ସମସ୍ତ ରମଣୀକୁଳ ମାତୃସମ–– ଆଉ ସମସ୍ତ

ବାଧାବିଘ୍ନ ବିକାଶର ଅମୃତମୟ ପଥ । ଭକ୍ତି, ବିନୟ, ପ୍ରେମ, ସରସତା ସେ ହୃଦୟରରୁ ସମସ୍ତ ବିଶ୍ୱ ପାଇଁ ଉଚ୍ଛୁଳି ପଡ଼ିଲା । ସ୍ୱର୍ଗବାସିନୀମାନେ ଆସି ଚତୁର୍ଦ୍ଦିଗରେ ଗୀତ ଗାଇ ଗାଇ ବୁଲିଲେ— ଗାଧିଙ୍କ ତପସ୍ୟା ଭାଙ୍ଗିବାକୁ ନାନା ଉଦ୍ୟମ କଲେ— ପାରିଲେ ନାହିଁ । ଦେଖୁ ଦେଖୁ ହଜାର ବର୍ଷ ଆସି ଶେଷ ହେଲା । ହଜାର ବର୍ଷର ଉପବାସ ପରେ ବିଶ୍ୱାମିତ୍ରଙ୍କ ଖାଇବାକୁ ପ୍ରବଳ ଇଚ୍ଛା ହେଲା । ଶିଷ୍ୟ ବାଢ଼ି ଅନ୍ନ ନୈବେଦ୍ୟ ଦେବାକୁ ଯାଉଛନ୍ତି । ହଜାର ବର୍ଷ ପରେ ମୁହଁ କରି ଖାଇବେ— ଅନ୍ନ ସମ୍ମୁଖରେ ଦେଖି ଅତି ଆଗ୍ରହ । ଇନ୍ଦ୍ର ସେତିକି ବେଳକୁ ଗୋଟିଏ କ୍ଷୁଧାର୍ତ୍ତ ବ୍ରାହ୍ମଣ ବେଶ ଧରି ଅନ୍ନଟିକ ମାଗି ବସିଲେ । ଧନ୍ୟ ! ତୁ ବିଧାତ୍ରି ହୃଅ । ଜୀବନ ପଦେ ପଦେ ଏ କି ଦାରୁଣ ପରୀକ୍ଷା ! ଇନ୍ଦ୍ର, ତୁମେ ସତେ କି ନିଷ୍ଠୁର ! ବିଶ୍ୱାମିତ୍ର ଆଜି ଇନ୍ଦ୍ରିୟ-ବିଜୟୀ, ଟିକିଏ ହେଲେ ଅଗପଛ ହେଲେ ନାହିଁ— ହସି ହସି ଅନ୍ନଟିକ ବ୍ରାହ୍ମଣ ହାତକୁ ଟେକି ଦେଲେ— ଆଉ ଅନ୍ନ ଗ୍ରହଣ ନ କରି ପୁଣି ସେହିପରି ତପସ୍ୟା ଚଳିଲା ।

ଦେଖୁ ଦେଖୁ ପୁଣି ସହସ୍ର ବର୍ଷ ଆସି ପୂର୍ଣ୍ଣ ହେବାକୁ ବସିଲା— ଆଉ ରକ୍ଷା ନାହିଁ— ବିଶ୍ୱାମିତ୍ରଙ୍କ ବ୍ରହ୍ମରନ୍ଧ୍ର ଦେଇ ଅଗ୍ନି ଜଳି ଉଠିଲା । ସେ ତେଜରେ ବିଶ୍ୱ ସଂସାର ପ୍ରକମ୍ପିତ ହେଲା— ସୂର୍ଯ୍ୟ ମଳିନ ଦେଖା ଗଲେ— ସ୍ୱର୍ଗପୁରର ଗନ୍ଧର୍ବ କିନ୍ନର ଭୟରେ ଅସ୍ଥିର ହୋଇ ପଡ଼ିଲେ । ବୋଧ ହେଲା, ବିଶ୍ୱାମିତ୍ରଙ୍କ ସେ ତେଜରେ ସୃଷ୍ଟି ସାରା ଭସ୍ମ ହୋଇଯିବ ! ଇନ୍ଦ୍ରାଦି ଦେବତାମାନେ ବ୍ରହ୍ମାଙ୍କ ନିକଟକୁ ଯାଇ, ବ୍ୟାକୁଳ ହୋଇ ଡାକ ଛାଡ଼ିଲେ । "ପ୍ରଭୋ, ଏ ସୃଷ୍ଟି ଗଲା-— ରକ୍ଷା କରନ୍ତୁ ! ବିଶ୍ୱାମିତ୍ରଙ୍କ ଯାହା ଇଚ୍ଛା, ପୂର୍ଣ୍ଣ ହେଉ— ସ୍ୱର୍ଗ ରାଜ୍ୟର ସମ୍ରାଟ୍ ପଦ ମାଗିଲେ, ତା ମଧ୍ୟ ଦିଅନ୍ତୁ ।"

ବ୍ରହ୍ମା ସେହିକ୍ଷଣି ବିଶ୍ୱାମିତ୍ରଙ୍କ ନିକଟକୁ ଗଲେ, ଅତି ଆନନ୍ଦରେ

ପ୍ରଶଂସା କରି କରି କହିଲେ, "ଧନ୍ୟ ମହର୍ଷି ! ଧନ୍ୟ ତୁମ ଜୀବନ ! ଆଜି ତୁମେ ତପସ୍ୟା ବଳରେ ଅସାଧ୍ୟ ସାଧନ କରିଅଛ । ବିଶ୍ୱ ସଂସାରକୁ ଦେଖାଇ ଅଛ— ବ୍ରାହ୍ମଣ୍ୟ ଜାତିଗତ, ଜନ୍ମଗତ ଅଧିକାର ନୁହେଁ— ଏହା ସାଧାରଣର ସମ୍ପତ୍ତି, ସାଧନା, ତପସ୍ୟାରେ ଲାଭ କରିବାର ଜିନିଷ । ତୁମେ ଆଜି ବ୍ରାହ୍ମଣ ହେଲ— ତୁମେ ଏ ସୃଷ୍ଟିରେ ଚିରଦିନ ଅମର ହୋଇ ରହ— ଆଉ ତୁମରି ଆଦର୍ଶ କାଳକାଳ ପତିତ ପ୍ରାଣରେ ଆଶା, ଦୁର୍ବଳ ପ୍ରାଣରେ ଶକ୍ତି ଜାଗ୍ରତ କରୁ । ଯାଅ ବ୍ରହ୍ମର୍ଷି, ତପସ୍ୟା ତ୍ୟାଗ କରି ଆନନ୍ଦରେ ଚାଲି ଯାଅ । ଆଉ ଭାବନା କାହିଁକି ?"

"ନା, ତା କପରି ହେବ ? ଆପଣ, ଆଉ ଦେବତାମାନେ ମୋତେ ବ୍ରାହ୍ମଣ ବୋଲି କହିଲ ସତ, କିନ୍ତୁ ସେଥିରେ ହେବ ନାହିଁ । ନିଜେ ବ୍ରାହ୍ମଣଶ୍ରେଷ୍ଠ ବଶିଷ୍ଠ ମୋତେ ବ୍ରାହ୍ମଣ ବୋଲି କହିବେ ତ ? ତା ନ ହେଲେ, ମୁଁ ପୁଣି ତପସ୍ୟା କରି ବସିବି— ଏହିଠାରେ ଇଚ୍ଛା ପୂର୍ଣ୍ଣ ହେବ, ନୋହିଲେ ଜୀବନ ସରିବ । "

ଦେବତାମାନେ ବଶିଷ୍ଠଙ୍କୁ ଯାଇ ଘଟଣା କହିଲେ— ବଶିଷ୍ଠ ସେହିକ୍ଷଣି ବିଶ୍ୱାମିତ୍ରଙ୍କୁ ଦେଖି ବାହାରିଲେ । ଆସି ଦୂରରୁ ଦେଖିଲେ— କି କମନୀୟ ମୂର୍ତ୍ତି ! ଭକ୍ତି, ବିନୟ, ଅନୁତାପର ପବିତ୍ର ଲୋତକ କି କମନୀୟ ଛଟାରେ ଦୁଇ ଗଣ୍ଡଦେଶରେ ଖେଳି ଯାଉଛି ! କ୍ରୋଧ ଅହଂକାରର ଲେଶ ନାହିଁ— ବ୍ରାହ୍ମଣର ପ୍ରେମମୟ, ପୁଣ୍ୟମୟ ତେଜରେ ଚତୁର୍ଦିଗ ଆଲୋକିତ ହେଉଅଛି । ଦୂରରୁ ବଶିଷ୍ଠଙ୍କୁ ଦେଖି, ବିଶ୍ୱାମିତ୍ର କାନ୍ଦି କାନ୍ଦି ଚରଣତଳେ ପଡ଼ିଗଲେ ।କାନ୍ଦି କାନ୍ଦି ବଶିଷ୍ଠ ବିଶ୍ୱାମିତ୍ରଙ୍କୁ ଭୂମିରୁ ଉଠାଇ ଆଲିଙ୍ଗନ କଲେ । ଆନନ୍ଦରେ ଭୋଳ ହୋଇ, କହିଲେ ଧନ୍ୟ ବିଶ୍ୱାମିତ୍ର ! ତୁମେ ସାଧନା ବଳରେ ଆଜି ନିଶ୍ଚୟ ବ୍ରାହ୍ମଣ୍ୟ ଶ୍ରେଷ୍ଠ ବ୍ରହ୍ମର୍ଷି ହୋଇ ପାରିଅଛ ।

—ଃ[ ସମାପ୍ତ ]ଃ—